# ନୂତନ ଏକାଙ୍କୀ


ସଂକଳନ :

**ନିମାଇଁ ପଟ୍ଟନାୟକ**

ରିଡ଼ର ଓ ମୁଖ୍ୟ ଅଧ୍ୟାପକ

ଓଡ଼ିଆ ବିଭାଗ

ନୟାଗଡ଼ କଲେଜ



ଫ୍ରେଣ୍ଡସ୍ ପବ୍ଲିଶର୍ସ



ପୁସ୍ତକ ପ୍ରକାଶକ ଓ ବିକ୍ରେତା

ବିନୋଦ ବିହାରୀ, କଟକ ୨

# ନୂତନ ଏକାଙ୍କୀ

ସଂପାଦନା :
ନିମାଇଁ ପଟ୍ଟନାୟକ

ପ୍ରକାଶକ :
ସହଦେବ ପ୍ରଧାନ
ଫ୍ରେଣ୍ଡସ୍ ପବ୍ଲିଶର୍ସ
ବିନୋଦ ବିହାରୀ, କଟକ—୨

ପ୍ରଥମ ମୁଦ୍ରଣ : ୧୯୭୪
ଦ୍ୱିତୀୟ ମୁଦ୍ରଣ : ୧୯୭୮

ମୁଦ୍ରାକର :
ସତ୍ୟବ୍ରତ ପ୍ରେସ୍
କଟକ—୧

ମୂଲ୍ୟ : ସାତ ଟଙ୍କା

## NUTAN EKANKI

*Edited by:*
**Nimai Pattanaik**

*Publisher* :
**Sahadev Pradhan**
**Friends' Publishers**
Binodbehari
Cuttack—753002

1st Edition : 1974
2nd Edition : 1978

*Printer* :
**Satyabrata Press**
Cuttack—1

**Price : Rupees Seven only**

# ସୂଚୀ

# ନୂତନ ଏକାଙ୍କୀର ଭୂମିକା

ସମସ୍ୟାବହୁଳ ଜଞ୍ଜାଳ-ଜଟିଳ ଜୀବନର କର୍ମ-ମୁଖର ପରିବେଶରୁ ମନୁଷ୍ୟ ସାମୟିକ ଅବସର ଲାଭକଲେ, ମାନସିକ କ୍ଳାନ୍ତି ଅପନୋଦନ ତଥା ଚିତ୍ତ ବିନୋଦନ ନିମିତ୍ତ ନାଟ୍ୟାଭିନୟ ସନ୍ଦର୍ଶନର ଆବଶ୍ୟକତା ଅନୁଭବ କରିଥାଏ । ନାଟକ, ନାଟିକା ସମସ୍ୟାବହୁଳ ମାନବ ଜୀବନର ଏକ ଏକ କାବ୍ୟିକ ପ୍ରତିଲିପି ଏବଂ ଏହା ଦୃଶ୍ୟକାବ୍ୟ ପର୍ଯ୍ୟାୟଭୁକ୍ତ । ବାସ୍ତବ ଜୀବନର କାହାଣୀ ଉପରେ ଆଧାରିତ ହୋଇଥିବାରୁ ଦର୍ପଣ ଫଳକରେ ନିଜ ମୁଖବିମ୍ବ ଅବଲୋକନ କଲା ଭଳି ରଙ୍ଗମଞ୍ଚରେ ମାନବର ଚିନ୍ତା-ଶୃଙ୍ଖଲ୍ୟ, ଘାତ-ପ୍ରତିଘାତ, ଦ୍ୱନ୍ଦ୍ୱ-ସଂଘାତ ପ୍ରତ୍ୟକ୍ଷ କରି ମନୁଷ୍ୟ ଆନନ୍ଦ ଲାଭ କରେ । ଜୀବନାନୁଭୂତିର ସାମଞ୍ଜସ୍ୟ ହେତୁ ରଙ୍ଗମଞ୍ଚରେ ଅଭିନୀତ ନାଟକ, ନାଟିକାର ଚରିତ୍ରବିଶେଷ ସହିତ ଦର୍ଶକ ନିଜେ ଏକୀଭୂତ ହୋଇଯିବା ଅସ୍ୱାଭାବିକ ନୁହେଁ । ସେତେବେଳେ ତାହାର ପ୍ରସୁପ୍ତ ରସବୋଧ ଜାଗ୍ରତ ହୁଏ ଏବଂ ସେ ତୃପ୍ତି ଲାଭ କରେ । ନାଟକ, ନାଟିକା ଅଭିନୟ ସାପେକ୍ଷ ହୋଇଥିବାରୁ ପରିବେଷଣ-ସୌକର୍ଯ୍ୟ ନିମିତ୍ତ, ଆର୍ଥିକ ଦୃଷ୍ଟିରୁ ଏବଂ କାର୍ଯ୍ୟବ୍ୟସ୍ତ ମାନବର ସମୟାଭାବ ବିସ୍ତରରୁ ଅନେକାଙ୍କ ନାଟକ ଅପେକ୍ଷା ଏକାଙ୍କିକାର ଆବଶ୍ୟକତା ଅଧିକ ଅନୁଭୂତ । ବିଂଶ ଶତକରେ ହିଁ ଏହି ଏକାଙ୍କିକାର ପ୍ରତିଷ୍ଠା ।

## ଏକାଙ୍କିକାର ସୃଷ୍ଟି ଓ ବିକାଶ :

|| ଏକ ଐତିହାସିକ ଦୃଷ୍ଟିପାତ ||

ବିଂଶ ଶତାବ୍ଦୀରେ ପ୍ରତିଷ୍ଠା ଓ ପ୍ରଶସ୍ତି ଲାଭ କଲେ ମଧ୍ୟ ପ୍ରାୟ ଅଷ୍ଟାଦଶ ଶତକର ମଧ୍ୟ ଭାଗରେ ଏକାଙ୍କିକାର ସୃଷ୍ଟି । ଅବଶ୍ୟ ପ୍ରାଚୀନ ସଂସ୍କୃତ ସାହିତ୍ୟରେ ଏକାଙ୍କୀର ନାମୋଲ୍ଲେଖ ଅଛି । 'ଏକେନ ଅଙ୍କେନୈବ ବିନିର୍ମିତା' ହେତୁ ଭାଣିକା ବି

ହୁଇ )

ଏକାଙ୍କ ନାଟିକା ଏବଂ ସଦ୍ବକେ ତ 'ହଲ୍ଲୀଷଃ ଏବ ଏକାଙ୍କଃ' । ତେବେ ଭାଣିକା ଓ ହଲ୍ଲୀଷକଠାରୁ ଏକାଙ୍କିକାର ସ୍ଥାନ ବହୁ ଊର୍ଦ୍ଧ୍ୱରେ । ଅଷ୍ଟାଦଶ ଶତାବ୍ଦୀରେ ଜର୍ମାନ୍ ନାଟକକାର ଲେସିଙ୍ଗ୍ Die Juden ନାମକ ଏକ ଏକାଙ୍କିକା ରଚନା କରିଥିଲେ । ଊନବିଂଶ ଶତକର ମଧ୍ୟଭାଗରେ ରଚିତ ମୁଗାନ୍ତକାରୀ ନାଟକକାର ଇବସେନ୍ଙ୍କର The Warriors Baarrow ଏକାଙ୍କିକାର ନାମ ଏଠାରେ ଉଲ୍ଲେଖଯୋଗ୍ୟ । ସୌଖୀନ ରଙ୍ଗମଞ୍ଚର ପ୍ରତିଷ୍ଠା ପରେ ଏକାଙ୍କିକାର ବିକାଶ ସାଧିତ ହୋଇଅଛି । କାରଣ ଏକାଙ୍କିକା ସାଧାରଣତଃ ସୌଖୀନ ରଙ୍ଗମଞ୍ଚ ଦ୍ୱାରା ପରି-ବେଷିତ ହୋଇଥାଏ । ସୌଖୀନ୍ ନାଟ୍ୟ ଗୋଷ୍ଠୀ ଅଭିନବ ଦୃଷ୍ଟିକୋଣରୁ ଜୀବନର ମୂଲ୍ୟାୟନ କରିବା ଓ ଜୀବନର ନୂତନ ମୂଲ୍ୟବୋଧ ଅନ୍ୱେଷଣ କରିବା ହେତୁ ଏକାଙ୍କିକା ଶିଳ୍ପର ଉନ୍ମେଷ ଲକ୍ଷ୍ୟ କରାଯାଇଅଛି । ୧୮୮୭ରୁ ଆରମ୍ଭ କରି ବିଭିନ୍ନ ସମୟରେ ପ୍ୟାରିସ୍, ବର୍ଲିନ୍, ଡବ୍ଲିନ୍ ଓ ନିଉୟର୍କ ପ୍ରଭୃତି ସହରରେ ଯେଉଁ ନାଟ୍ୟସଂସ୍ଥାମାନ ପ୍ରତିଷ୍ଠିତ ହୋଇଥିଲା ସେଗୁଡ଼ିକର ନାନା ପରୀକ୍ଷାନିରୀକ୍ଷା ଏକାଙ୍କିକାକୁ ନବ ନବ ରୂପ ପ୍ରଦାନ କରିଅଛି ।

## ଏକାଙ୍କିକାର ସ୍ୱରୂପ

|| ଏକାଙ୍କିକାର ପରିଚୟ ||

ଏକାଙ୍କିକା ପ୍ରଚଳିତ ଦୁଇଅଙ୍କ, ତିନିଅଙ୍କ- ଚତୁରଙ୍କ ବା ପଞ୍ଚାଙ୍କ ନାଟକର ଅଙ୍କ ବିଶେଷ ନୁହେଁ ବା ନାଟକର ସଂକ୍ଷିପ୍ତ ସଂସ୍କରଣ ନୁହେଁ । ଏହା ଆଦି-ମଧ୍ୟ-ଅନ୍ତ ସମନ୍ୱିତ ହ୍ରସ୍ୱାୟତନବିଶିଷ୍ଟ ସ୍ୱୟଂ ସଂପୂର୍ଣ୍ଣ ଏକାଙ୍କୀ । ଅର୍ଥାତ ଏକ ବା ଏକାଧିକ ଦୃଶ୍ୟ ସମ୍ବଳିତ ଏକ ଅଙ୍କବିଶିଷ୍ଟ ପୂର୍ଣ୍ଣାଙ୍ଗ କ୍ଷୁଦ୍ର ନାଟିକା ! ଗୋଟିଏ ଅଙ୍କ ପରିସର ମଧ୍ୟରେ ନାଟକକାରଙ୍କର ପ୍ରତିପାଦ୍ୟ ବିଷୟ ଆଦି-ମଧ୍ୟ-ଅନ୍ତଃ ସମନ୍ୱିତ ହୋଇ ସାମଗ୍ରିକ ଭାବେ ଏକ ବା ଏକାଧିକ ଘଟଣା ବିନ୍ୟାସଦ୍ୱାରା ପୂର୍ଣ୍ଣାଙ୍ଗ ରୂପ ଲାଭ କରେ ।

|| ଘଟଣା ବିନ୍ୟାସ ||

ପଥରେ ସନ୍ନିବିଷ୍ଟ ଘଟଣାବଳୀ କାର୍ଯ୍ୟ-କାରଣ-ସମ୍ପର୍କ ସୂତ୍ରରେ ଗ୍ରନ୍ଥିତ । ଏକାଙ୍କିକାର କାହାଣୀ ପ୍ରବାହ ତଥା ପ୍ରତିପାଦ୍ୟ ବିଷୟର ପ୍ରତିଷ୍ଠା ନିମିତ୍ତ ଏକାନ୍ତ ଭାବେ ଆବଶ୍ୟକ ଘଟଣାବଳୀର ସୁସମ୍ପର୍କିତ ବିନ୍ୟାସ ଏକାଙ୍କିକାକୁ ଏକ ଅଖଣ୍ଡ ସାମଗ୍ରିକ ରୂପ ପ୍ରଦାନ କରିପାରେ । ମାତ୍ର ଏକାଙ୍କିକାରେ ଏକାଧିକ ଘଟଣାର ସମାବେଶ ଅପେକ୍ଷା ବାସ୍ତବ ଜୀବନର ଏକ ସୁନିର୍ବାଚିତ ମହନୀୟ ଅଥଚ ଆବେଗସଞ୍ଚାରୀ ଘଟଣାର ବିନ୍ୟାସ ଅଧିକ କଳାସମ୍ମତ । କାରଣ ଏକାଧିକ ଘଟଣାର ବିନ୍ୟାସ କାହାଣୀ ପ୍ରବାହ ମଧ୍ୟରେ ଅସ୍ପଷ୍ଟତା ଓ ବିଶୃଙ୍ଖଳା ସୃଷ୍ଟି କରିବାର ଆଶଙ୍କା ଥାଏ । ଏକାଙ୍କିକାର ପ୍ରତିପାଦ୍ୟ

ବିଷୟ ଅସ୍ପଷ୍ଟ, ଅପରିସ୍ଫୁଟ ବା ଅତିପରିସ୍ଫୁଟ ନ ହେଲେ ଆବେଦନଶୀଳ ହୁଏ ।

**।। ସ୍ଥାନ-କାଳ-କାର୍ଯ୍ୟର ଐକ୍ୟନୀତି ।।**

ପୁନଶ୍ଚ ଏହି ପ୍ରତିପାଦ୍ୟ ବିଷୟ ସ୍ଥାନ-କାଳ-ପାତ୍ର ସାପେକ୍ଷ । ଏକ ଅଙ୍କ ମଧ୍ୟରେ ସ୍ଥାନ, କାଳ ଓ କାର୍ଯ୍ୟର ଐକ୍ୟର ସମାବେଶ ହେଲେ ହିଁ ତାହା ଏକ ଆଦର୍ଶ ଏକାଙ୍କିକା ପଦବାଚ୍ୟ ହୋଇପାରେ । ଘଟଣା ପ୍ରବାହର ସମସ୍ତ ସହିତ ଏକାଙ୍କିକାର ଘଟଣା-ପ୍ରବାହ କାଳ ପ୍ରାୟ ସମାନ ହେବା ବାଞ୍ଛନୀୟ ଏବଂ ସେହି ସୀମିତ କାଳ ମଧ୍ୟରେ ଚରିତ୍ରମାନଙ୍କର ଗମନା-ଗମନ-ସମ୍ଭବ ସ୍ଥାନ ବିଶେଷରେ ହିଁ ନାଟକୀୟ ଘଟଣା/ଘଟଣାବଳୀ ସନ୍ନିବେଶିତ ହେବା ଆବଶ୍ୟକ । ସେହିପରି ଏଥିରେ ସନ୍ନିବେଶିତ ଏକ ବା ଏକାଧିକ ଦୃଶ୍ୟ ଏକାଙ୍କିକାର ପ୍ରତିପାଦ୍ୟ ବିଷୟ ସହିତ ଏକାନ୍ତ ସମ୍ପର୍କିତ ହେଲେ ଏବଂ ଚରିତ୍ର-ମାନେ ସେହି ପ୍ରତିପାଦ୍ୟ ବିଷୟ ଓ ଦୃଶ୍ୟର ପରିପୋଷକ ରୂପେ ପ୍ରତୀତ ହେଲେ ଏକାଙ୍କିକାର କାର୍ଯ୍ୟ/ପାତ୍ର-ଐକ୍ୟ ରକ୍ଷା କରାଯାଇପାରେ । ମାତ୍ର ଏକାଧିକ ଦୃଶ୍ୟର ସନ୍ନିବେଶ ସ୍ଥଳେ ଯଦି ବିଭିନ୍ନ ଦୃଶ୍ୟରେ ବହୁ ଘଟଣା-ପୀଠର ଅବତାରଣା କରାଯାଇଥାଏ, ତାହାହେଲେ ଦର୍ଶକ/ପାଠକ ଅନେକ ସମୟରେ ମୂଳ ଯୋଗସୂତ୍ର ହରାଇ ବସିବାର ସମ୍ଭାବନା । ସେପରି ସ୍ଥଳେ ସ୍ଥାନର ଐକ୍ୟରକ୍ଷା କଠିନ ହୋଇ-ପାରେ । ତେଣୁ ଏକାଙ୍କିକା ଏକ ଦୃଶ୍ୟ ସମ୍ବଳିତ ହୋଇ ତାହାର ଘଟଣା/ଘଟଣା-ବଳୀ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ଏକ ନିର୍ଦ୍ଦିଷ୍ଟ ପରିବେଶରେ ସଙ୍ଘଟିତ ହେଲେ, କାହାଣୀ-ପ୍ରବାହ ଯେପରି କ୍ରିୟାଶୀଳ ହୁଏ, ସେହିପରି ତାହାର କ୍ରମିକ-ଗତି ଅବ୍ୟାହତ ରଖି ଅବିଚ୍ଛିନ୍ନ ଭାବେ ରସ ପରିବେଷଣ କରିଥାଏ । ମାତ୍ର ତାହା ଏକାଧିକ ଦୃଶ୍ୟ ସମ୍ବଳିତ ହେଲେ ସେ କ୍ଷେତ୍ରରେ ବିପଦର ଆଶଙ୍କା ରହିବା ଅସମ୍ଭବ ନୁହେଁ ।

**।। ଗଠନ ରୀତି ।।**

ଏକାଙ୍କିକାର ମୂଳ ପ୍ରତିପାଦ୍ୟ ବିଷୟ ଏବଂ ତା'ଉପରେ ଆଧାରିତ କାହାଣୀ ଯେତେ ଗୁରୁତ୍ୱପୂର୍ଣ୍ଣ ଓ ଶକ୍ତିଶାଳୀ ହୋଇଥାଏ, ଏକାଙ୍କିକା ସେତିକି ପ୍ରଭାବଶାଳୀ ହୁଏ । ଅବଶ୍ୟ ଏହି କାହାଣୀର ସାର୍ଥକ ଉପସ୍ଥାପନା ଏକାଙ୍କିକାକୁ ବେଶୀ ହୃଦୟସ୍ପର୍ଶୀ କରେ । ଏହି କାହାଣୀ ପ୍ରାରମ୍ଭ, ଅଭିବୃଦ୍ଧି ବା ପ୍ରବାହ, ଶୀର୍ଷାରୋହଣ ଓ ଗ୍ରନ୍ଥିମୋଚନ ମଧ୍ୟଦେଇ ପରିସମାପ୍ତିରେ ଉପନୀତ ହୁଏ । ଏହାର ପ୍ରାରମ୍ଭ ଚମକପ୍ରଦ, ଆକସ୍ମିକ ଘଟଣାସୂଚକ କିମ୍ବା ସମସ୍ୟାଜ୍ଞାପକ ହେବା କଳାସାପେକ୍ଷ । ପକ୍ଷାନ୍ତରେ, ପ୍ରାରମ୍ଭରେ ସାଧାରଣ କଥୋପକଥନ ଭଙ୍ଗୀ ମଧ୍ୟ ଅନୁସୃତ ହୋଇପାରେ । ଯବନିକା ଉତ୍ତୋଳନ ପରେ ପରେ ଏକ ଘନୀଭୂତ ସମସ୍ୟା ଚରିତ୍ର ସମକ୍ଷରେ ଆକସ୍ମିକ ଭାବେ ଉପସ୍ଥାପିତ ହୋଇଯାଏ । କ୍ରମେ ପ୍ରକୃତ ପରିସ୍ଥିତି ସୂଚିତ ହୋଇ ଶୀର୍ଷାରୋହଣ ବା ଚରମ ମୁହୂର୍ତ୍ତ ଦିଗରେ ଏକାଙ୍କିକାର କାହାଣୀ ଗତି-ମୁଖର ହୁଏ । ତାହାର ଘଟଣା-ପ୍ରବାହର ବେଗ ଯେପରି ଦ୍ରୁତତର,

ସେହିପରି ଆବେଗସଞ୍ଚାରୀ ଏବଂ ସ୍ଥଳ ବିଶେଷରେ ସନ୍ଦେହ-ତମିସ୍ରାଚ୍ଛନ୍ନ । ସମୟେ ସମୟେ ଅତୀତ ଘଟଣାବଳୀର ପ୍ରାସଙ୍ଗିକ ପରିପ୍ରକାଶ ସେହି ଆବେଗ ବୃଦ୍ଧିର କାରଣ ହୋଇଯାଏ । ଏହି ଗତି-କାଳରେ ଏକାଙ୍କିକା ଦ୍ୱନ୍ଦ୍ୱ ସଂଘାତରେ ପ୍ରକମ୍ପିତ ହୁଏ । ଏହି ଦ୍ୱନ୍ଦ୍ୱ ଅନେକ ସମୟରେ ଏକାଙ୍କିକାର ପ୍ରାଣ-ପ୍ରବାହକୁ ନିୟନ୍ତ୍ରଣ କରେ ।

॥ ଦ୍ୱନ୍ଦ୍ୱ ॥
(ସୃଷ୍ଟି ଓ ବିକାଶ)

ଚରିତ୍ର ସହିତ ଚରିତ୍ରର, ଚରିତ୍ର ସହିତ କୌଣସି ଘଟଣାଜନିତ ପରିସ୍ଥିତିର, ଚରିତ୍ର ସହିତ ସାମାଜିକ ପ୍ରଥା ବା କୁସଂସ୍କାରର କିମ୍ବା ଚରିତ୍ରର ମାନସିକ ସ୍ତରରେ ନୀତି ସହ ଅନୀତିର, ଆଦର୍ଶ ସହ ବାସ୍ତବତାର କିମ୍ବା ଆଶା ସହିତ ଆଶଙ୍କାର ଦ୍ୱନ୍ଦ୍ୱ ସୃଷ୍ଟି ହୋଇପାରେ । ଏହି ଦ୍ୱନ୍ଦ୍ୱ ସୃଷ୍ଟି ହୋଇ ଶୀଘ୍ର ବିକଶିତ ହୁଏ ଏବଂ ଏକାଙ୍କିକାର ବେଗକୁ କ୍ଷିପ୍ରତର କରାଇ ଚରମ ମୁହୂର୍ତ୍ତରେ ସମାପ୍ତି ଲାଭ କରେ । ଦ୍ୱନ୍ଦ୍ୱର ସମାବେଶରେ ଏକାଙ୍କିକା ଅଭିନୟସାପେକ୍ଷ ହୋଇପାରେ । ଏକାଙ୍କିକାର ଅଭିନୟସାପେକ୍ଷତା ତା'ର ପ୍ରଧାନ ଗୁଣ । ଦ୍ୱନ୍ଦ୍ୱର ପୂର୍ଣ୍ଣବିକାଶ ଘଟିଲେ ଏବଂ ଆବେଗ ଓ ସଂଶୟ ଚୂଡ଼ାନ୍ତ ରୂପ ପାଇଲେ ଏକାଙ୍କିକାର ଚରମ ମୁହୂର୍ତ୍ତ ଆସିଯାଏ । ସକଳ ସଂଶୟ, ସକଳ ଆବେଗ ଓ ସକଳ ଦ୍ୱନ୍ଦ୍ୱର ତୁଙ୍ଗ ବିନ୍ଦୁ ସେହି ଚରମ ମୁହୂର୍ତ୍ତରେ ବାଣରେ ଅଗ୍ନିସଂଯୋଗ ପରି ସେସବୁର ବିସ୍ଫୋରଣ ଘଟେ । ଅଧିକାଂଶ କଳାପୂର୍ଣ୍ଣ/ରୁଚିଶୀଳ ଏକାଙ୍କିକାର ପରିସମାପ୍ତି ଘଟେ ସେହି ଚରମ ମୁହୂର୍ତ୍ତରେ । କୌଣସି କୌଣସି ଏକାଙ୍କୀରେ ଚରମ ମୁହୂର୍ତ୍ତ ପରେ ସଂଶୟାଚ୍ଛନ୍ନ ଘଟଣାର ଗ୍ରନ୍ଥି ଉନ୍ମୋଚିତ ହୁଏ ଓ କାହାଣୀର ସମାପ୍ତି ଘଟେ । ଏପରି ସ୍ଥଳରେ ଅନେକ ସମୟରେ ନାଟକକାରଙ୍କର ପ୍ରତିପାଦ୍ୟ-ବିଷୟରେ ଲକ୍ଷ୍ୟର ଐକ୍ୟସହ ଆନୁସଙ୍ଗିକ ଉଦ୍ଦେଶ୍ୟଗତ ଐକ୍ୟର ବର୍ତ୍ତମାନତା ଲକ୍ଷିତ ହୁଏ ।

॥ ଚରିତ୍ର ॥

ସେହି ପ୍ରତିପାଦ୍ୟ ବିଷୟ ଓ ମୂଳ ଲକ୍ଷ୍ୟ ମୁଖ୍ୟ ଚରିତ୍ର ମାଧ୍ୟମରେ ହିଁ ପ୍ରତିପାଦିତ ହୁଏ । କାହାଣୀ-ପ୍ରବାହ ନିମିତ୍ତ ଏବଂ ମୁଖ୍ୟ ଚରିତ୍ରର ଚାରିତ୍ରିକ ବୈଶିଷ୍ଟ୍ୟ ପ୍ରତିପାଦନ ନିମିତ୍ତ ଆଉ ମଧ୍ୟ କେତେକ ଆନୁସଙ୍ଗିକ ଚରିତ୍ର ସୃଷ୍ଟି କରାଯାଏ । ଅନାବଶ୍ୟକ ଚରିତ୍ର ସୃଷ୍ଟି ଏକାଙ୍କିକାର ନୀତିବିରୁଦ୍ଧ । ପୁନଶ୍ଚ ଏକାଙ୍କିକାର କଥାବସ୍ତୁ ଯେଉଁ ଶ୍ରେଣୀର ଜନ-ଜୀବନରୁ ଗୃହୀତ

॥ ସଂଲାପ ॥

ଚରିତ୍ର ସେହି ଶ୍ରେଣୀର ହେବା ଆବଶ୍ୟକ ଏବଂ ସେ ଚରିତ୍ରର ମୁଖର ଭାଷା ମଧ୍ୟ ସେହି ଶ୍ରେଣୀର ହେବା ବିଧେୟ । ସଂଲାପ ହିଁ ନାଟକ, ଏକାଙ୍କିକାର ପ୍ରାଣ । ବାସ୍ତବତା ଏକାଙ୍କିକାର ପ୍ରାଣ ଧର୍ମ ହୋଇଥିବାରୁ ସଂଲାପରେ

ବାସ୍ତବତା ପ୍ରତି ଅଧିକ ଧ୍ୟାନ ଦିଆଯାଏ । ତେଣୁ ସଂଳାପ ପାତ୍ର ମୁଖୋପଯୋଗୀ ଭାଷାରେ ରଚିତ । ସଂଳାପ ନାଟକ/ଏକାଙ୍କିକାର ଭାବ-ସମ୍ଭାରକୁ ପ୍ରକାଶ କରୁଥିବାରୁ, ରସ ପ୍ରକାଶର ଏକାନ୍ତ ସହାୟକ ହେତୁ ତାହା ଯେତେ ଜୀବନ୍ତ ହୁଏ, ଏକାଙ୍କିକା ସେତିକି ହୃଦ୍ୟ ହୁଏ । ଏକାଙ୍କିକା ସ୍ୱଳ୍ପାୟତନ ବିଶିଷ୍ଟ ହେତୁ ସଂଳାପ ମଧ୍ୟ ସଂକ୍ଷିପ୍ତ ଅଥଚ ପ୍ରଭାବଶାଳୀ ହୁଏ । ଏହି ସଂଳାପ ଯେତେ ଗୁରୁତ୍ୱପୂର୍ଣ୍ଣ, ବୌଦ୍ଧିକ, ପ୍ରତୀକାତ୍ମକ, ବ୍ୟଞ୍ଜନାଧର୍ମୀ ହୁଏ, ଏକାଙ୍କିକାର ମହତ୍ତ୍ୱ ସେତେ ବୃଦ୍ଧି ପାଏ । ସ୍ଥଳ ବିଶେଷରେ ଏହା ବକ୍ରୋକ୍ତିପୂର୍ଣ୍ଣ ଓ ଉଦାହରଣ ଧର୍ମୀ ମଧ୍ୟ ହୋଇଥାଏ । ଚରିତ୍ର ଓ ପରିବେଶ ଅନୁଯାୟୀ ସରଳ, ସହଜବୋଧ ସଂଳାପ ଯେପରି ରୁଚିଶୀଳ ହୁଏ, ସାମସ୍ତିକ କାବ୍ୟିକ ସଂଳାପ ମଧ୍ୟ ସେହିପରି ରସୋଦ୍ଦୀପକ ହୋଇପାରେ । ଏକାଙ୍କିକାରେ ପ୍ରାୟ ଗୋଟିଏ ରସର ସମାବେଶ ହୋଇଥାଏ । ତେଣୁ ରସ ପ୍ରବାହ ନିମିତ୍ତ ସଂଳାପ ସଂଯୋଜନାରେ ସର୍ବଦା ଭାର-

### ।। ବେତାର ଏକାଙ୍କିକା ।।

ସାମ୍ୟ ରକ୍ଷା କରାଯାଏ । ନାଟକ, ଏକାଙ୍କିକା ରଚନା କାଳରେ ନାଟକକାର ତାହାର ମଞ୍ଚୋପଯୋଗିତା ବିଷୟରେ ଅବହିତ ରହିବା ସର୍ବାଦୌ ଆବଶ୍ୟକ । ମଞ୍ଚୋପଯୋଗୀ ଏକାଙ୍କିକାରେ ସଂଳାପ ସଂଯୋଜନ ବେଳେ ନାଟ୍ୟକାରଙ୍କୁ ଯେତେ ସତର୍କତା ଅବଲମ୍ବନ କରିବାକୁ ହୁଏ, ବେତାର ଏକାଙ୍କିକା କ୍ଷେତ୍ରରେ ତତୋଧିକ ସତର୍କ ହେବାକୁ ପଡ଼େ । କାରଣ ମଞ୍ଚୋପଯୋଗୀ ଏକାଙ୍କିକା ଭଳି ବେତାର ଏକାଙ୍କିକା ଦୃଶ୍ୟକାବ୍ୟ ପର୍ଯ୍ୟାୟଭୁକ୍ତ ନୁହେଁ — ଶ୍ରବ୍ୟକାବ୍ୟ ଅନ୍ତର୍ଗତ । କାରଣ ଏହା ସଂଳାପ ସର୍ବସ୍ୱ ଅଟେ । କେବଳ ଶ୍ରୁତି ମାଧ୍ୟମରେ ରସାସ୍ୱାଦନ କରିବାକୁ ହେଉଥିବାରୁ ତାହାର ସଂଳାପ ଅଧିକ ଶକ୍ତିଶାଳୀ, ସ୍ପଷ୍ଟ ଓ ପ୍ରାଞ୍ଜଳ । ଆଙ୍ଗିକ ଅଭିନୟ ସାହାଯ୍ୟରେ ମଞ୍ଚୋପଯୋଗୀ ଏକାଙ୍କିକାରେ ଯେଉଁ ଭାବ ପ୍ରକାଶ କରାଯାଇପାରେ ବେତାର ଏକାଙ୍କିକାରେ ତାହାର ବାଚିକ ଅଭିବ୍ୟକ୍ତି ମାତ୍ର ହୁଏ । ତେଣୁ ଏଥିରେ ଚରିତ୍ର ସଂଖ୍ୟା ଅପେକ୍ଷାକୃତ ଅଳ୍ପ । କାରଣ ଏଠାରେ ସ୍ୱରର ବିଭିନ୍ନତା ମାଧ୍ୟମରେ ଚରିତ୍ରକୁ ଚିହ୍ନିବାକୁ ହୁଏ । ସେହିପରି ନାଟକୀୟ ପରିବେଶର ମାୟା ଚରିତ୍ରମାନଙ୍କର କଥୋପକଥନ ପ୍ରସଙ୍ଗରେ ଓ ସଙ୍ଗୀତ ଧ୍ୱନି ପ୍ରବାହ ମାଧ୍ୟମରେ ସୃଷ୍ଟି ହୁଏ । ବେତାର ଏକାଙ୍କିକା ଅଭିନୟସାପେକ୍ଷ ନ ହେଲେ ମଧ୍ୟ ମଞ୍ଚୋପଯୋଗୀ ଏକାଙ୍କିକାଠାରୁ ନ୍ୟୂନ ନୁହେଁ । ଓଡ଼ିଶାରେ ବେତାର ମାଧ୍ୟମରେ ଦୃଶ୍ୟ ଏକାଙ୍କିକାଠାରୁ ଉନ୍ନତ କେତେକ ଶ୍ରବ୍ୟ-ଏକାଙ୍କିକା ପ୍ରସାରିତ ହୋଇ ଖ୍ୟାତି ଅର୍ଜନ କରିଅଛି ।

### ଉଦ୍ଭଟ ଏକାଙ୍କିକା :

ଏକାଙ୍କିକା ସାହିତ୍ୟର ଏହି ପ୍ରଚଳିତ ପରମ୍ପରା ହଠାତ ଦିନେ ସ୍ତବ୍ଧ ହୋଇଗଲା । ନବନାଟ୍ୟ ଆନ୍ଦୋଳନରେ ଭାଙ୍ଗି ପଡ଼ିଲା ତା'ର କାନ୍ଥମାନ । ପ୍ରାଚୀନ

ପରମ୍ପରା, ପ୍ରାଚୀନ ଧାରା, ପ୍ରଚଳିତ ମୂଲ୍ୟବୋଧ ସବୁ ବୋଧ ହେଲା ଅନୁପାଦେୟ । ସେହିଦିନଠାରୁ ଖୋଜା ପଡୁଛି ଜୀବନର ନୂତନ ମୂଲ୍ୟବୋଧ । ଆଧୁନିକ କାଳରେ ସାମାଜିକ ଜୀବନରେ ଯେଉଁ ବୈପ୍ଳବିକ ପରିବର୍ତ୍ତନ ସଂଘଟିତ ହେଲା, ତାହା ଫଳରେ ମନୁଷ୍ୟର ଚିନ୍ତାଧାରାରେ ମଧ୍ୟ ପରିବର୍ତ୍ତନ ଲକ୍ଷିତ ହୋଇଛି । ଫଳତଃ ନାନା ଚିନ୍ତା, ନାନା ପ୍ରଶ୍ନ ମନୁଷ୍ୟର ମନକୁ ସତତ ଶଙ୍କାକୁଳ କରୁଅଛି । ମନୁଷ୍ୟ ନିଜକୁ ଏକାନ୍ତ ଏକାକୀ ମନେ କରୁଛି । ଏହି ଏକାକୀତ୍ୱବୋଧ ସହିତ ଶୂନ୍ୟତା ବୋଧ ତାହାକୁ ଏକ ଅନିଶ୍ଚିତତା ଓ ଅସହାୟତା ମଧ୍ୟକୁ ଟାଣିନେଇ ଯାଉଅଛି । ତେଣୁ ମନୁଷ୍ୟ ମନରେ ସ୍ଥିତିବାଦୀ ପ୍ରଶ୍ନ/ଚିନ୍ତା ଜାଗ୍ରତ ହେବା ସ୍ୱାଭାବିକ । ଏହି ପରିପ୍ରେକ୍ଷୀରେ ରଚିତ ଏକାଙ୍କିକାର ପୂର୍ବ ସ୍ୱର ପରିବର୍ତ୍ତିତ ହୋଇଅଛି । ତେଣୁ ଏକାଙ୍କିକା ରଚନା ଓ ପରିକଳ୍ପନା ଉଭୟ କ୍ଷେତ୍ରରେ ପ୍ରଚଳିତ ନିୟମକୁ ଅସ୍ୱୀକାର କରାଯାଉଛି । ନାଟ୍ୟକାର ଯେପରି ଚାହୁଁ ନାହିଁ ତାର ରଚନାକୁ ମଞ୍ଚ ନିୟମର ଶୃଙ୍ଖଳ ମଧ୍ୟରେ ଆବଦ୍ଧ କରି ରଖିବାକୁ, ଅଭିନେତା ସେହିପରି ଚାହୁଁ ନାହିଁ ନିର୍ଦ୍ଦେଶକର ନିର୍ଦ୍ଦେଶନା ଭିତରେ ନିଜକୁ ଶୃଙ୍ଖଳିତ କରିବାକୁ, ମଣିଷ ବି ସେହିପରି ଚାହୁଁ ନାହିଁ ସାମାଜିକ ନୀତି-ନିୟମ-ବିଶ୍ୱାସ ମଧ୍ୟରେ ନିଜକୁ ବାନ୍ଧି ରଖିବାକୁ । ଫଳତଃ ଏକାଙ୍କିକାର ବିଷୟବସ୍ତୁ ଆକୃତି, ପ୍ରକୃତି ଓ ଉଦ୍ଦେଶ୍ୟରେ ମଧ୍ୟ ପରିବର୍ତ୍ତନ ଲକ୍ଷିତ ହେଉଛି । ପ୍ରଚଳିତ ନାଟକ/ଏକାଙ୍କିକାର ବାସ୍ତବତା ପରିବର୍ତ୍ତେ ଅବାସ୍ତବତା, ଦର୍ଶକକୁ ଅଭିଭୂତ କରିବାର ଇଚ୍ଛା ପରିବର୍ତ୍ତେ ତାହାକୁ ଉତ୍ତ୍ୟକ୍ତ କରାଇବାର ଇଚ୍ଛା, ଅଭିନୟ କ୍ଷେତ୍ରରେ ସ୍ଥଳ ବିଶେଷରେ ଅତି-ନାଟକୀୟତା ପ୍ରତିଷ୍ଠା ଲାଭ କରିଅଛି । ସଂଳାପ ସଂଯୋଜନାରେ ମଧ୍ୟ ସେହିପରି ପରିବର୍ତ୍ତନ ସମ୍ଭବ ହୋଇଛି ଏବଂ ଏ ସ୍ଥଳରେ ଅଭିବ୍ୟକ୍ତିବାଦର ପ୍ରଭାବ ମଧ୍ୟ ଲକ୍ଷ୍ୟ କରିବାର କଥା । ପାଶ୍ଚାତ୍ୟ ସାହିତ୍ୟରେ ଇଉଜେନ ଆଇଓନେସ୍କୋ, ସାମୁଏଲ୍ ବେକେଟ୍, ଆର୍ଥର୍ ଆଦାମୋଭ୍, ଏଡ୍‌ୱାର୍ଡ଼ ଆଲ୍‌ବି ପ୍ରଭୃତିଙ୍କର ନୂତନ ପରୀକ୍ଷା ନିରୀକ୍ଷା ଆଜିର ଏକାଙ୍କିକାକୁ ନୂତନ ରୂପ ପ୍ରଦାନ କରିଛି । ତେବେ ବର୍ତ୍ତମାନ [illegible] ଏହି ନୂତନତା ଯେତେବେଳେ ପୁନଶ୍ଚ ପୁରାତନ ହୋଇଯିବ, ସେତେବେଳେ କ'ଣ ହେବ ? ନୂତନତାର ପ୍ରତିଷ୍ଠା ପାଇଁ ପାଗଳ ହେଲାବେଳେ ପୁଣି ସେହି ପୁରାତନକୁ ନୂତନ ଭ୍ରମରେ ଗ୍ରହଣ କରିନେବା ଅସମ୍ଭବ ନୁହେଁ । ସେହିପରି ପ୍ରଚଳିତ ନାଟ୍ୟ-ପଦ୍ଧତିକୁ ଅସ୍ୱୀକାର କରି ନୂତନ ନିଶାରେ ପାଗଳ ହେଲାବେଳେ ପୁନଶ୍ଚ ଅତି ପୁରାତନ ଯାତ୍ରା, ପ୍ରହସନ ସମସ୍ତଙ୍କୁ ଫେରିଯିବା ବିଚିତ୍ର କ'ଣ ? ସେଥିପାଇଁ ତ ଆଜି ପୁରାତନ ଯାତ୍ରାର ନବୀକରଣ ହେଉଅଛି ।

## ଓଡ଼ିଆ ଏକାଙ୍କିକାର ପରମ୍ପରା :

ସବୁ ଭାଷାର ସାହିତ୍ୟରେ ଏକାଙ୍କିକା ଏକ ପରବର୍ତ୍ତୀ କୃତି । ଏପରିକି କ୍ଷୁଦ୍ର ଗଳ୍ପର ବିକାଶ ପରେ ହିଁ ଏକାଙ୍କିକାର ପ୍ରତିଷ୍ଠା । ଓଡ଼ିଆ ସାହିତ୍ୟରେ ଦ୍ୱିତୀୟ

ବିଶ୍ୱ ଯୁଦ୍ଧୋତ୍ତର କାଳରେ ଏକାଙ୍କିକାର ବିକାଶ ଘଟିଅଛି, ଯଦିଓ ତତ୍ପୂର୍ବରୁ ଏ ଦିଗରେ ବହୁ ପ୍ରଚେଷ୍ଟା ଲକ୍ଷ୍ୟ କରାଯାଏ ଏବଂ ଗୋବିନ୍ଦଚନ୍ଦ୍ର ଶୂରଦେଓ ତାହାର ଉଦାହରଣ । ତାଙ୍କର ପାଠେଇ ବୋଉ, ପେଟେଣ୍ଟ ମେଡିସିନ (ନାଟ୍ୟରୂପ) ଏକ ଏକ ଉଲ୍ଲେଖଯୋଗ୍ୟ କୃତି । ସଙ୍ଗୀତ ନୃତ୍ୟାଦିରେ ଦକ୍ଷତା ଥିବାରୁ ସେ କେତେକ ଫାର୍ସ ବା ପ୍ରହସନର ମଧ୍ୟ ସ୍ରଷ୍ଟା—ଯେପରି ମହନ୍ତ ମହାରାଜ ଫାର୍ସ । ତାଙ୍କର ଅନେକ ରଚନାରେ ସ୍ଥଳ ବିଶେଷରେ ଏହି ଫାର୍ସ ବା ପ୍ରହସନର ସ୍ପର୍ଶ ଥିବାର ଲକ୍ଷ୍ୟ କରାଯାଏ ।

ଏକାଙ୍କିକା ସାହିତ୍ୟ ବିକାଶର ପ୍ରଥମ ପର୍ଯ୍ୟାୟରେ କାଳନ୍ଦୀ ଚରଣ ପାଣିଗ୍ରାହୀ, ଅଦ୍ୱୈତ ପ୍ରସାଦ ମହାନ୍ତି ଓ ହରେକୃଷ୍ଣ ମହତାବ ପ୍ରଭୃତିଙ୍କର ପ୍ରଚେଷ୍ଟା ଅବିସ୍ମରଣୀୟ । ଅଦ୍ୱୈତ ପ୍ରସାଦ ମହାନ୍ତି ଏମାନଙ୍କ ମଧ୍ୟରେ ଐତିହାସିକ ଏକାଙ୍କିକା ସୃଷ୍ଟିରେ ଅଧିକ ଆଗ୍ରହୀ । ତାଙ୍କର ବସ୍ତିଖଣ୍ଡିଆ ଏକାଙ୍କିକା ସ୍ଥାନୀୟ ରଙ୍ଗ ରସରେ ସମୃଦ୍ଧ । ମାତ୍ର କାଳନ୍ଦୀ ଚରଣ ପାଣିଗ୍ରାହୀ ଓ ହରେକୃଷ୍ଣ ମହତାବ ଅଧିକ ମାତ୍ରାରେ ସମାଜ-ସଚେତନ ବ୍ୟକ୍ତି ହୋଇଥିବାରୁ ସାମାଜିକ ଏକାଙ୍କିକା ରଚନାରେ ଉଲ୍ଲେଖ-ଯୋଗ୍ୟ କୃତିତ୍ୱ ଅର୍ଜନ କରିଛନ୍ତି । ମହତାବଙ୍କ ଅପେକ୍ଷା କାଳନ୍ଦୀ ଚରଣଙ୍କ ରଚନାରେ ସ୍ଥଳ ବିଶେଷରେ ଅତିପରିଷ୍ଟତାର ସ୍ପର୍ଶ ରହିଛି । ତାଙ୍କର ଅନେକ ଗଳ୍ପ ମଧ୍ୟ ଏହି ଦୋଷ ବର୍ଜିତ ନୁହେଁ ।

ଏକାଙ୍କିକା ସାହିତ୍ୟ ବିକାଶର ଦ୍ୱିତୀୟ ପର୍ଯ୍ୟାୟରେ ପ୍ରାଣବନ୍ଧୁ କରଙ୍କ ଭୂମିକା ଅବିସ୍ମରଣୀୟ । ତାଙ୍କର ରଚନାର ଶିଳ୍ପ-ସଚେତନତା ଓଡ଼ିଆ ଏକାଙ୍କିକା ସାହିତ୍ୟର ପଥପ୍ରଦର୍ଶକ ହୋଇଛି । ପ୍ରାଣବନ୍ଧୁ କରଙ୍କୁ ତାଙ୍କର ଏକାଙ୍କିକା ରଚନାର ପୁଷ୍କଳତା ହେତୁ ନାଟକ ରଚୟିତା ଅପେକ୍ଷା ଏକାଙ୍କିକା ରଚୟିତା କୁହାଯାଇ ପାରେ । ତାଙ୍କର ରଚନା ସମ୍ଭାର, ପ୍ରାଣବନ୍ଧୁଙ୍କ ଏକାଙ୍କିକା ଓ ଏକାଙ୍କିକା-୨ୟ ଖଣ୍ଡରେ ସନ୍ନିବେଶିତ । ତାଙ୍କର ଶେଷୋକ୍ତ ରଚନା ଅନେକ ପରିମାଣରେ ମନସ୍ତତ୍ତ୍ୱଧର୍ମୀ । ସମକାଳୀନ ଏକାଙ୍କିକା ରଚୟିତା ରାଜକିଶୋର ରାୟ, ପ୍ରଭାତ ମୁଖାର୍ଜୀ ଓ ରବିନାରାୟଣ ବିଶାଳଙ୍କର କୃତିମାନ ପରିମାଣ ଦୃଷ୍ଟିରୁ ନୁହେଁ, ସାର୍ଥକତା ଦୃଷ୍ଟିରୁ ଉଲ୍ଲେଖଯୋଗ୍ୟ । ଏମାନଙ୍କ ମଧ୍ୟରେ ରାଜକିଶୋର ରାୟ ମୌଳିକ ରଚନା ଅପେକ୍ଷା ନିଜର କ୍ଷୁଦ୍ରଗଳ୍ପକୁ ନାଟ୍ୟରୂପ ଦେବାରେ ଅଧିକ କୁଶଳୀ ।

ଏକାଙ୍କିକା ବିକାଶର ତୃତୀୟ ପର୍ଯ୍ୟାୟରେ ମନୋରଞ୍ଜନ ଦାସ, ବିଶ୍ୱଜିତ ଦାସ ଓ ବିଜୟ ମିଶ୍ରଙ୍କ ନାମ ଉଲ୍ଲେଖଯୋଗ୍ୟ । ଏମାନେ ଅଧିକ ମାତ୍ରାରେ ନାଟ୍ୟଶିଳ୍ପ ସଚେତନ ହେତୁ ତାଙ୍କର କୃତିମାନ ଏକ ଏକ ସାର୍ଥକ ସୃଷ୍ଟି ସଂପଦରେ ପରିଣତ ହୋଇଛି । ଏହି କୃତିମାନ ସାହିତ୍ୟିକଦୃଷ୍ଟିରୁ ଯେପରି ଜୀବନ୍ତତର ସାମାଜିକ ଜୀବନର ବିବିଧ ସମସ୍ୟାମୂଳକ ଚିତ୍ର ବହନ କରିଥିବାରୁ ସେପରି ହୃଦୟସ୍ପର୍ଶୀ । ଏହି କାଳର ନବନାଟ୍ୟ ଆନ୍ଦୋଳନର ନବତରଙ୍ଗ ବିଳମ୍ବରେ ହେଲେ ମଧ୍ୟ ଓଡ଼ିଶାକୁ

ପ୍ରଭାବିତ ହୋଇ ଆସି ଓଡ଼ିଆ ଏକାଙ୍କିକା-ପୂଜକନକୁ ସିକ୍ତ କରିଅଛି । ଆଲୋଚ୍ୟ ଶିଳ୍ପିଦ୍ୱୟ ସେ ଧାରାରେ ଅବଗାହନ କରି ଏକାଙ୍କିକା କ୍ଷେତ୍ରରେ ବହୁ ପରୀକ୍ଷାନିରୀକ୍ଷା ଚଳାଇଛନ୍ତି । ଅବଶ୍ୟ ଏମାନେ ମୁଖ୍ୟତଃ ନାଟକ ରଚୟିତା । କିନ୍ତୁ ମନୋରଞ୍ଜନ ଦାସ ଓ ବିଶ୍ୱଜିତ ଦାସ ନାଟକ ରଚୟିତା ହେଲେ ମଧ୍ୟ ବହୁ ସାର୍ଥକ ଏକାଙ୍କିକା ସୃଷ୍ଟି କରିଅଛନ୍ତି । ଏକାଙ୍କିକା ରଚନା ଓ ପ୍ରଯୋଜନା ଉଭୟ ଦଗରେ ଉଭୟେ ପ୍ରତିଭାବାନ ଶିଳ୍ପୀ । ମନୋରଞ୍ଜନ ଦାସଙ୍କର ଏକାଙ୍କିକାମାନ 'ଗ୍ରନ୍ଥନାଟକ', 'ମହା ସମୁଦ୍ର' ଓ 'ଅବବାହିକାର ସ୍ୱପ୍ନ' ପୁସ୍ତକରେ ସନ୍ନିବେଶିତ । ବିଶ୍ୱଜିତ ଦାସଙ୍କର ଏକାଙ୍କିକାଗୁଡ଼ିକ ଏକତ୍ର ସଂକଳିତ ହୋଇ ନ ଥିଲେ ମଧ୍ୟ ସାମାଜିକ ବ୍ୟଙ୍ଗଚିତ୍ର ପ୍ରଦାନରେ ତାଙ୍କର ସ୍ୱତନ୍ତ୍ରତା ଅବିସ୍ମରଣୀୟ । ବିଜୟ ମିଶ୍ର ଏକାଙ୍କିକା ରଚନାର ସଫଳତା ପାଇଁ ନୂତନ୍ତ, ଏଥିରେ ନୂତନ ପରୀକ୍ଷାନିରୀକ୍ଷା କ୍ଷେତ୍ରରେ ଜଣେ ଅସାମାନ୍ୟ ପ୍ରତିଭାସମ୍ପନ୍ନ ବ୍ୟକ୍ତି । ତାଙ୍କର ସମସାମୟିକ କୃତିରଚୟିତାଙ୍କ ମଧ୍ୟରେ ନିମାଇଁ ପଟ୍ଟନାୟକ ଓ ହରିହର ମିଶ୍ରଙ୍କ ନାମ ନବ ନାଟ୍ୟଧାରାର କଳା ସଚେତନ ଏକାଙ୍କିକା ରଚୟିତା ହିସାବରେ ଉଲ୍ଲେଖଯୋଗ୍ୟ । ପୁନଶ୍ଚ ସେହି ନାଟ୍ୟ ଆନ୍ଦୋଳନର ବହୁ ପରୀକ୍ଷାନିରୀକ୍ଷାରେ କାର୍ତ୍ତିକ ରଥ, ରତ୍ନାକର ଚଇନି ଓ ରମେଶ ପାଣିଗ୍ରାହୀ ଯେ ସାର୍ଥକତା ଅର୍ଜନ କରିଅଛନ୍ତି, ତାହା ଓଡ଼ିଆ ଏକାଙ୍କିକା ସାହିତ୍ୟକୁ ପୁଷ୍ଟ କରିଛି । ସେହିପରି ବେତାର ଏକାଙ୍କିକା ସାହିତ୍ୟକୁ ପୁଷ୍ଟ କରିଛି । ସେହିପରି ବେତାର ଏକାଙ୍କିକା ରଚନା କ୍ଷେତ୍ରରେ ମଧ୍ୟ ସୁରେନ୍ ମହାନ୍ତି, ମନୋରଂଜନ ଦାସ, ସାମୁଏଲ୍ ନାୟକ ଓ ଦାଶରଥି ପ୍ରସାଦ ଦାସଙ୍କ କୃତିତ୍ୱ ଉଲ୍ଲେଖଯୋଗ୍ୟ ।

## ନିଜ କଥା :

ଏକାଙ୍କିକା ସାହିତ୍ୟ ସମ୍ପର୍କରେ ଏଠାରେ ଆହୁରି ଅନେକ କଥା କହିବାର ଥିଲି । ମାତ୍ର ଏକାଙ୍କିକା ଭଳି ଏହାକୁ ସ୍ୱଳ୍ପାୟତନବିଶିଷ୍ଟ କରିବାକୁ ପଡ଼ୁଥିବାରୁ ଅଗତ୍ୟା ଚିନ୍ତିରୁ ନିବୃତ୍ତ ହେଉଛି । ସୁଧୀ ପାଠକବର୍ଗ ଏ ତ୍ରୁଟିମାର୍ଜନା କରିବେ । ସେହି କଳେବର ବୃଦ୍ଧି ଭୟରୁ ମଧ୍ୟ ଯେଉଁ କୃତୀ ଶିଳ୍ପୀଙ୍କର ଏକାଙ୍କିକା ଏଥିରେ ସଂକଳିତ ହୋଇପାରି ନାହିଁ, ସେମାନେ ମୋତେ କ୍ଷମା ଦେବେ । ଏ ସଂକଳନଟି ସୁକଳେବର ହେବା ପାଇଁ ଯେଉଁମାନେ ସାହାଯ୍ୟ କରିଛନ୍ତି ସେମାନଙ୍କ ନିକଟରେ କୃତଜ୍ଞ ରହିଲି । ବିଶ୍ୱଜିତ ଦାସଙ୍କର ଏକାଙ୍କିକାଟି ଏକ ବିଦେଶୀ ଗଳ୍ପର ଛାୟାରେ ଲିଖିତ । ମୁଦ୍ରଣ ଦୋଷରୁ ଏହା ଯଥାସ୍ଥଳରେ ଲିପିବଦ୍ଧ ହୋଇପାରିନାହିଁ । ପରିଶେଷରେ ମୋର ପ୍ରକାଶକ ବନ୍ଧୁ ସହିଦେବ ପ୍ରଧାନ ମୋର ବହୁ ଦିନର ଏ ବାସନାକୁ ରୂପ ଦେଇଥିବାରୁ ତାଙ୍କ ନିକଟରେ ଋଣୀ ରହିଲି । ଇତି ।

ନୟାଗଡ଼, ୧୪ । ୯ । ୭୪ —ନିମାଇଁ ପଟ୍ଟନାୟକ

# ସଂଧ୍ୟା ଆସରର ଭୂତ

ପ୍ରାଣବଂଧୁ କର

॥ ଚରିତ୍ର ॥

ମନୋଜ

ରବି

ନିଧିଆ

ନଳି

ସବିତା

ମୋର ମା'

(ମନୋଜର ଡ୍ରଇଂରୁମ୍—ପଛପଟ କାନ୍ଥର ଠିକ୍ ମଝିରେ ଗୋଟିଏ ଝରକା ଏବଂ ଟିକିଏ କଡ଼କୁ ଗୋଟିଏ ଦୁଆର—ଝରକା ଓ ଦୁଆର ବାଟେ ଆକାଶ ଓ ଗଛପତ୍ରର କେତେକ ଅଂଶ ଦେଖାଯାଏ—କୋଠରୀଟିରେ ବୁଣାପାଞ୍ଚୋଟି ଗଦିଆ ଚୌକି ଟେବୁଲ ଓ ଅନ୍ୟାନ୍ୟ ଆଧୁନିକ ସରଂଜାମ ରହିଛି ।

ପର୍ଦ୍ଦା ଉଠିଲବେଳକୁ ଦେଖାଗଲା ସନ୍ଧ୍ୟାର ମାଛି-ଅନ୍ଧାରରେ ସ୍ୱର ପାଞ୍ଚଜଣ କିଏ ବସିଛନ୍ତି; କିନ୍ତୁ ପ୍ରତ୍ୟେକଙ୍କର ମୁହଁ ବେଶ୍ ଅସ୍ପଷ୍ଟ—ତଥାପି ସେଥିମଧ୍ୟରୁ ତିନିଜଣ ମହିଳା ଓ ଦୁଇଜଣ ପୁରୁଷ ବୋଲି ମନେହୁଏ । ସେମାନଙ୍କ କଥୋପ-କଥନ ଶୁଣାଯାଉଛି—ଠିକ୍ ସେତିକବେଳେ ବାହାର ପଟ ଦୁଆରେ ଜଣେ ପୁରୁଷର ଅସ୍ପଷ୍ଟ ମୂର୍ତ୍ତି ଦେଖାଗଲା—ସେ ଦୁଆର ପାଖରେ ଅନ୍ୟମାନଙ୍କର ଅଲକ୍ଷ୍ୟରେ ଠିଆ ହୋଇ ରହିଲା ଓ ସେମାନଙ୍କର କଥାବାର୍ତ୍ତା ଶୁଣିଲା ।)

ହୁଁ, ତା'ହେଲେ ନଳିର ରବି ଝାଲ ପ୍ରତି ତୀବ୍ର ପ୍ରତିକ୍ରିୟା ଭୂତର କାରଣ ?

—ହିଁ—କିନ୍ତୁ ରବି

(ହଠାତ୍ ଜଣେ ମହିଳା ଉଠି ଠିଆ ହେବାରୁ)

କିରେ ନଳି, ଉଠିବୁ କୁଆଡ଼େ ? ଦ···ଏ ଅନ୍ଧାରରେ ଯିବୁ କୁଆଡ଼େ ? ଲାଇଟ୍ ଯେ କେତେବେଳେ ଜଳିବ !

—ନାଁ, ଭଇ ମୁଁ ଯାଉଚ—ମୋ ମୁଣ୍ଡ କଅଣ ହଉଛି……

(ବାହାରକୁ ଚାହିଁ ଓ ଅସ୍ପଷ୍ଟ ମୂର୍ତ୍ତିକୁ ଦେଖିପାଇ ଚିତ୍କାର କରି)

କିଏ?

(ସମସ୍ତେ ବାହାର ଦୁଆରକୁ ଚାହିଁଲେ—ଡ୍ରଇଂରୁମ୍‌ର ଦୁଇଜଣ ପୁରୁଷଙ୍କ ମଧ୍ୟରୁ ଜଣେ କହିଲ—)

—କିଏ ? କିଏ ସେଠି ଠିଆ ହେଇଚ ? ଅରେ ଭିତରକୁ ଆସ ।

କିନ୍ତୁ ଅସ୍ପଷ୍ଟ ମୂର୍ତ୍ତିଟି ଭିତରକୁ ଆସିବା ପରିବର୍ତ୍ତେ ବାହାରେ ଅଦୃଶ୍ୟ ହୋଇଗଲ । ଠିଆ ହୋଇଥିବା ମହିଳାଟି ହଠାତ୍ ବସିପଡ଼ି ଟେବୁଲ ଉପରେ ମୁଣ୍ଡ ରଖିଦେଲ । ଅନ୍ୟ ଜଣେ ନାରୀକଣ୍ଠରୁ ଶୁଭିଲ—

—ଏଁ କ'ଣ ହେଲ ନଳି ?

—ସବିତା ପାଣି ନେଇ ଅସ…ନଳି ବୋଧହୁଏ

(ପ୍ରଥମ ପୁରୁଷର କଣ୍ଠରୁ ଶୁଣାଗଲ)

ଏଁ କ'ଣ ହେଲ ନଳିର ? ସେନ୍‌ସ୍ ନାହିଁ ନା କଅଣ ?

—ବୋଧହୁଏ—

—କିନ୍ତୁ କାହିଁକି ?

—ଦୁଆର ପାଖରେ ରବି ଆସି ଠିଆ ହୋଇଥିଲ ଭଳି ମନେ ହେଲ ।

(ମଞ୍ଚ କ୍ରମେ ଅନ୍ଧାର ହୋଇଆସିଲ । କିଛି ସମସ୍ତ ପରେ ଧୀରେ ଧୀରେ ମଞ୍ଚର ଆଲୋକ ଜଳିଲ—ପୂର୍ବର ସେଇ ଦୃଶ୍ୟ ଆଲୋକରେ ସ୍ପଷ୍ଟ ହୋଇ ଉଠିଚ—ଗୋଟିଏ ସୋଫାରେ ବସି ନଳି ସ୍ୱେଟର ବୁଣୁ ବୁଣୁ ମଝିରେ ମଝିରେ ଦାଣ୍ଡଦୁଆର ଆଡ଼େ ମୁଣ୍ଡ ଟେକି ଚାହୁଁଚ—ନଳିର ଦେହ ଓ ମୁହଁର ଗଠନରେ ଖୁଣ ନାହିଁ—ଫର୍ଫା ଗୋରି—ବୟସ ପଚିଶ, ଛବିଶ

ଭିତରେ । ତା'ର ଡାହାଣ ହାତ ବୁଢ଼ାଆଙ୍ଗୁଠିରେ ଖଣ୍ଡେ କନା ଗୁଡ଼ା ହୋଇଛି—

ସନ୍ଧ୍ୟା ସାତଟା—ଘର ଭିତରେ ଦାଣ୍ଡପଟୁ ପ୍ରବେଶ କଲା ମନୋଜ । ତିରିଶ, ବତିଶ ବର୍ଷର ଯୁବକ—ଲମ୍ବା ଚଉଡ଼ା ଚେହେରା ଏବଂ ଉଜ୍ଜ୍ୱଳ ଶ୍ୟାମ ବର୍ଣ୍ଣ । ମନୋଜକୁ ଦେଖି ନଳି ପ୍ରଶ୍ନ ସୂଚକ ଆଖିରେ ତା'ଆଡ଼େ ଚାହିଁଲା ଓ ପରେ ପରେ ଅନ୍ୟଆଡ଼େ ମୁହଁ ଘୂରେଇ ଦେଇ ସ୍ୱେଟର୍ ବୁଣିବାରେ ଲାଗିଲା ।)

ମନୋଜ ॥ ନେଳି ! ମୋତେ ଦେଖି ହଠାତ୍ ଏମିତି ମୁହଁ ଘୂରେଇ ନେଲୁ ଯେ— କଥା କ'ଣ ?

ନଳି ॥ କିଛି ନାହିଁ ।

ମନୋଜ ॥ କିଛି ନାହିଁଟି !—(ଗୋଟାଏ ଚୌକିରେ ବସିପଡ଼ି) ଟିକିଏ ଚା'ର ବ୍ୟବସ୍ଥା କରୁ ନଳି—ଗୋଡ଼ହାତ କୋଲି ମାରିଗଲା ।

ନଳି ॥ ମାରୁ । ମୁଁ ଚା' କରି ପାରିବିନି ।

ମନୋଜ ॥ ମାନେ ? ଭଉଣୀ ହୋଇ ଭାଇର କଷ୍ଟ ବୁଝିବୁନି ?

ନଳି ॥ (ପାଟିକରି) ତମେ ଯେମିତି ଭାଇ ହୋଇ ଭଉଣୀର କଷ୍ଟଗୁଡ଼ା ବୁଝି ପକେଇଚ । ହର ଦରଦ ଦେଖେଇ ତ କହିଦେଲ, ମୋର ଜଣେ ସାଙ୍ଗ ଖୁବ୍ ବଡ଼ ଡାକ୍ତର । ତାକୁ ସାଥି ସାଥି ଡ଼ାକି ଆଣୁଚ—ଦି'ଘଣ୍ଟା ପରେ ଫେରୁଚ, କୋଉଠି ଅଡ୍ଡା ଦେଇ—

ମନୋଜ ॥ ଆରେ ତୋ ଆଙ୍ଗୁଠି ବନ୍ଧା ତ ଭଲ ହେଇଗଲାଣି । ଡାକ୍ତରର ଆଉ ଦରକାର କ'ଣ ?

ନଳି ॥ (ଗମ୍ଭୀର ଭାବରେ) କେମିତି ଜାଣିଲ, ବନ୍ଧା ଭଲ ହୋଇଗଲାଣି ବୋଲି ?

ମନୋଜ ॥ ସ୍ୱେଟର ବୁଣୁଚୁ ଯେ······

ନଳି ॥ ସେଇଟା ବୁଣୁଥିଲି, ଯନ୍ତ୍ରଣାକୁ ଭୁଲିବା ପାଇଁ । (ସ୍ୱେଟରଟାକୁ ସୋଫା ଉପରେ ଫୋପାଡ଼ି ଦେଇ) ତମରି ପାଇଁ ବୁଣୁଥିଲି—ଆଉ ଏବେ ବୁଣ ।

ମନୋଜ ॥ (ହସିଉଠି) ଆରେ ବାବୁ, ଏମିତି ଚିଡ଼ିଯାଉଚୁ କାହିଁକି ? ଦେ' ଟିକିଏ ଚା' କରି ଦେ ।

ନଳି ॥ (ଦାନ୍ତଚିପି) ଅରେ କହିଲି ପାରିବିନି ।

ମନୋଜ ।। ଅସ୍ତୁ, ଡାକ୍ତରଙ୍କୁ କପେ ଚା' ଦେଇଥାନ୍ତୁ ନା ନାହିଁ ? ତା' ସାଙ୍ଗେ ମୋ ପାଇଁକି କପେ—

ନଳ ।। ଡାକ୍ତର ତ ଆସିଲେ ନାହିଁ—

ମନୋଜ ।। (ରସିକତା କରି) ଧର ଧୈର୍ଯ୍ୟ, ଯେନରେ ସାନ୍ତ୍ୱନା—(ଆଖିବୁଜି) ଡାକ୍ତର ଆସୁଛି ଧରି, ଛୁରି ଆଉ ବ୍ୟାଣ୍ଡେଜର ଜନା ।

ନଳ ।। (ହସି ହସି ପୁଣି ଗମ୍ଭୀର ହୋଇଯାଇ) ନୂଆବୋଉଙ୍କୁ ଡାକଦେବି ?

ମନୋଜ ।। (ଆଖି ଖୋଲି) କାହିଁକି ?

ନଳ ।। ରସିକତା କରିବ ନୂଆବୋଉଙ୍କ ଆଗରେ—ଖୁବ୍ ମାନିବ ।

ମନୋଜ ।। (ବିସ୍ମୟ ବିସ୍ଫାରିତ ଆଖିରେ) ଏଁ ! ତୁ ବିଶ୍ୱାସ କରୁନୁ ମୋ' କଥାରେ ? Believe me—ଡାକ୍ତର ଆସୁଛି—ବାଟରେ ହଠାତ୍ ଆଉ ଜଣେ ରୋଗୀକୁ ଦେଖି ଅଟକି ଗଲା—ରାସ୍ତା ମଝିଟାରେ ଗାଡ଼ି ଅଟକେଇ—

ନଳ ।। ହଉ······ଏଇଥିରୁ ଜଣା ପଡ଼ିଗଲା, ତମେ କେତେ ସତୁଆ...ଡାକ୍ତର ତ ଗାଡ଼ି ଅଟକେଇ ରୋଗୀ ସହିତ କଥାବାର୍ତ୍ତା କଲେ...ଆଉ ତମେ ସେଠୁ ଚାଲି ଚାଲି ଆସିଲ ।

ମନୋଜ ।। ଅରେ ନାଇଁ ମ—ଆମ ହତାର ଠିକ୍ ଆରପଟେ—ମୁଁ ଚା'ର ବ୍ୟବସ୍ଥା ପାଇଁ ଆଗରୁ ବାହାରି ଆସିଲି......

ନଳ ।। ଡାକ୍ତରଙ୍କୁ ନ ଦେଖିଲେ ଚା'ର ବ୍ୟବସ୍ଥା ହୋଇ ପାରିବନି...

ମନୋଜ ।। ଇସ୍! ଡାକ୍ତର ଛୁରି, ଚିମୁଟା, ବ୍ୟାଣ୍ଡେଜ, ଇଥର—କେତେ କ'ଣ ଯେ ଧରି ଆସୁଛି, ତୋ ଅଙ୍ଗୁଠି ବିନ୍ଧା ଶୁଣି...

ନଳ ।। (ଚମକି ଓ ଭୟଭୀତ କଣ୍ଠରେ) ଏଁ ! ଏଗୁଡ଼ା ସବୁ କ'ଣ ହେବ ମନୁଭାଇ ?

ମନୋଜ ।। ମୁଁ କି ଜାଣେଁ—ମୁଁ କ'ଣ ଡାକ୍ତର ? ଆଙ୍ଗୁଠି ଖୁବ୍ ବିନ୍ଧୁଛି ବୋଲି ଶୁଣି କହିଲେ—ବୋଧହୁଏ boneକୁ affect କରିଛି—ଦରକାର ପଡ଼ିଲେ······

ନଳ ।। କ'ଣ ଦରକାର ପଡ଼ିଲେ ?

ମନୋଜ ।। ଆରେ ମତେ ପଚାରୁଛୁ ଯେ, ମୁଁ ଏବେ କ'ଣ କହିବି...ସିଏ ଯେମିତି ଶବ୍ଦ ଉଚ୍ଚାରଣ କରିଥିଲେ, ମୁଁ ସେମିତି ତୋ ଆଗରେ କହିଲି...

ନଳ ।। ତମ ଏ ଡାକ୍ତର ସାଙ୍ଗଟିର ଦାୟିତ୍ୱଜ୍ଞାନ ଖୁବ୍ କମ୍—

ମନୋଜ ।। (ବଡ଼ ବଡ଼ ଆଖିରେ ନଳକୁ ଚାହିଁ) ଲୋକଟାକୁ ନ ଦେଖି ଗୋଟାଏ ରିମାର୍କ ପାସ୍ କରିଦେଲୁ ?

ନଳି ॥ କିଛି କାରଣ ନଥାଇ ମୁଁ ରିମାର୍କ କରେନି—ଜଣକ ଡ଼ାକ୍ତରରେ ଗୋଟେ ରୋଗୀକୁ ଦେଖିବାକୁ ଅସି ଆଉ ଗୋଟେ ରୋଗୀ ସହିତ ରାସ୍ତାରେ ଗପ ଯୋଡ଼ିଦବାଟା ଦାୟିତ୍ୱଜ୍ଞାନର ସୁନ୍ଦର ନମୁନା—

ମନୋଜ ॥ ତୁ ଠିକ୍ କହୁଚୁ ନଳି—ସେ ବୁଢ଼ା ବ୍ୟାଚେଲରଟା ଅସୁ ଅଛି—ତୋ ମତାମତଟା ତାକୁ ଜଣେଇ ଦେବି—

ନଳି ॥ ଆରେ, ତମେ ତ ଭାରି ବଡ଼ ମୁସ୍କିଲ୍ ଲୋକ । ମୁଁ ତମକୁ ଯାହା କହିଲି, ସେ କଥା ତମେ ତାଙ୍କୁ କହିବ କାହିଁକି ?

ମନୋଜ ॥ କହିବନି ? ଆଚ୍ଛା ହଉ, କହିବନି···

ନଳି ॥ ତମ ଭଳି ଢିଲ ମିଜାଜର ଲୋକ ପାଖରେ କେବେ କିଛି କହିବା ଉଚିତ ନୁହେଁ—

ମନୋଜ ॥ କଅଣ କହିଲୁ ? ଢିଲ ମିଜାଜ୍ ?...ଏହି ଯେମିତି ଢିଲ ପାଇଜାମା—ଢିଲ କାମ...ସେମିତି, ନା ?

ନଳି ॥ ତମ ସାଙ୍ଗଟି ବ୍ୟାଚେଲର ?

ମନୋଜ ॥ (ନଳିକୁ ଚାହିଁ) ଏଥିରେ ଖୁସି ହେବାର କିଛି ନାହିଁ ନଳି—ନୋ ଚାନ୍ସ ହାଷ୍ଟ । ବୁଝିଲୁ ଏକଦାରେ ହାଷ୍ଟ......

ନଳି ॥ (ପରେ ପରେ କଟାକ୍ଷ କରି) ମୁଁ ସେଇଥି ପାଇଁ ପଚାରିଲି ?

ମନୋଜ ॥ ଆଉ ?

ନଳି ॥ ତମ ଭଳି ଅଭଦ୍ର ସହିତ ମୁଁ କଥାବାର୍ତ୍ତା କରିବାକୁ ଚାହେଁନି । (ଉଠି ଯାଉ ଯାଉ ମନୋଜ ହଠାତ୍ ଉଠି ନଳିର ହାତକୁ ଧରିପକାଇ ତାକୁ ସୋଫାରେ ବସେଇ ଦେଲା ଓ ତା' ପାଖରେ ବସିପଡ଼ି)

ମନୋଜ ॥ ଏମିତି ଟିକିଏ କଥାରେ ରାଗିଯାଉଚୁ କାହିଁକି ? ସୁନା ଭଉଣୀଟା କହ—କାହିଁକି ପଚାରୁଥିଲୁ···

ନଳି ॥ ବ୍ୟାଚେଲର ନ ହୋଇଥିଲେ ଏମିତି ଦାୟିତ୍ୱହୀନ କେହି ହୁଏନି—

ମନୋଜ ॥ ଆରେ ନା ନା ନା—ଅମେରିକା ଫେରନ୍ତା ଡାକ୍ତର କି ନା—ରୋଗୀ-ଗୁଡ଼ା ତାକୁ ହଇରାଣ କରି ପକାଉଛନ୍ତି । ଅଧିକାଂଶ ରୋଗୀଙ୍କ ତ ବେଠିରେ ଚିକିତ୍ସା କରେ ।

ନଳି ॥ ବେଠିରେ କାହିଁକି କରନ୍ତି ?

ମନୋଜ ॥ ପଇସା କ'ଣ ହବ ତା'ର କହିଲୁ—ତା' ମା' ଆଉ ସିଏ, ମାତ୍ର ଦୁଇଟା ତ ପେଟ ।

ନଳି ॥ (ଉଠିଗଲା ଓ ଦାଣ୍ଡ ଦୁଆର ପର୍ଦ୍ଦାଟା ଆଡ଼େଇ ଦେଖି ଆସିଲା ।) ହୁଁ—ଦି'ଟା ତ ପେଟ—

ମନୋଜ ।। ପର୍ଦ୍ଦାଟା ଆଡ଼େଇ ଦେଇ ଥିଲି ଯେ !

ନଳ ।। ହଠାତ୍ ତୁମ ସାଙ୍ଗ ଯଦି ପଶି ଆସିବେ ନା—ସେ କାହିଁକି ବାହା ହେଉ ନାହାନ୍ତି, ଭାଇ ?

ମନୋଜ ।। ଏମିତି—ପିଲା ଦିନରୁ ଗୋଟିଏ ଖିଆଲ—ବାହା ହବନି—

ନଳ ।। (ହସି) ଖିଆଲ ନା ଛାଇ ! ଚେହେରାଟି ରାବଣ ବଂଶୀୟ କି କଅଣ—ସେଇଥି ପାଇଁ କେହି ଝିଅ ପସନ୍ଦ କଲେନି ବୋଧହୁଏ—

ମନୋଜ ।। ( କୌତୁକ କରି ) ସତେ ? ଆଗ ତାକୁ ଦେଖ ଆଜି; କିନ୍ତୁ ସାବଧାନ ନଳ ।

ନଳ ।। ଇସ୍ ।

ମନୋଜ ।। ଅତି ସୁନ୍ଦର ଚେହେରା—ଯେ କୌଣସି ଝିଅ—

ନଳ ।। ଆହ ବୁଝିଗଲି......

ମନୋଜ ।। କ'ଣ ବୁଝିଗଲୁ ?

ନଳ ।। ସେ କାହିଁକି ବାହା ହେଉନାହାନ୍ତି—ବ୍ୟାଚେଲର ଡାକ୍ତରମାନଙ୍କର ଯଥେଷ୍ଟ ଦୁର୍ନାମ ଅଛି ।

ମନୋଜ ।। ତୁ ଗୋଟାଏ ଇଏ—ଅର୍ଥାତ୍ ହୋପ୍‌ଲେସ୍ ନଳ—କହିଲୁ ପରା ଡାକ୍ତର ଏ ଯୁଗର ଗୋଟାଏ ସ୍ରଷ୍ଟା—

( ଉଠି ଯାଇ ଓ ରାସ୍ତାଆଡେ ଚାହିଁ )

ଏତେବେଳେ ଯାଏ ଧରି କ'ଣ ଗପ କରୁଚ ମ ?

ନଳ ।। ମୋ' କଥାକୁ ଗାଲ୍ ପେଲ୍ ଥିଲ ପରା ?

(ମନୋଜର ସ୍ତ୍ରୀ ସବିତାର ପ୍ରବେଶ-ହାତରେ ମନୋଜର ଗୋଟିଏ ମଇଳା ଜାମା ସିଲେଇ କରୁ କରୁ)

ନୂଆବୋଉ, ଭାଇ ବଡ଼ ଗାଳୁଆ ହେଲେଣି—ତାଙ୍କୁ ତୁ ଶାସନ କର—

ସବିତା ।। (ମନୋଜ ଆଡ଼େ କଣେଇ ଚାହିଁ) ବାଡ଼ୁଆ ତାଳକାରୁ ମାଡ ଛ'ଟା ମାଡ ହେଲ ସିଏ ନାଁ କଟେଇଛନ୍ତି, ତାଙ୍କୁ ମୁଁ କି ଶାସନ କରିବ ?

ନଳ ।। ଭୁଲ୍ ନୂଆବୋଉ—ଭୁଲ୍—ବେଶିଦିନ ଯାଏଁ ବାଡ଼ୁଅ ରହି ସିଏ ଶେଷକୁ ବାଡ଼ୁଅ ତାଳକାରୁ ନାଁ କଟାଏ, ସେ ସ୍ତ୍ରୀର ଖୁବ୍ ବାଧ୍ୟ ହୁଏ । ତମେ ଖାଲି ଥରେ ପରୀକ୍ଷା କଲେ ଇ ହେଲା ।

ମନୋଜ ।। (ରେଡ଼ିଓ ପାଖକୁ ଯାଇ ଓ ରେଡ଼ିଓ ଖୋଲି) ସନ୍ଧ[illegible]ନାଙ୍କର ପ୍ରସ୍ତାବଟା ଗ୍ରହଣ କରିନଅ ହେ—କପେ ଚା' ଦେଇ ପାରିବ ? ନଳ ମନା କଲା ଦବାକୁ ।

ନଳ ॥ (ଜିଭ କାମୁଡ଼ି) ସତ—କଥା କହୁଥରେ ମୁଁ ଭୁଲି ଯାଇଥିଲି ତମ ସ୍ତ୍ରୀ'କଥା—ଆଣି ଦେଉଚ ।

ମନୋଜ ॥ ତୁ ତ ସେକ୍ ଠୋକ୍ ନାହିଁ କରିଦେଲୁ, ତୁ ଫେର୍ ଥାଉ କାହିଁକି—?

ନଳ ॥ ବେଶ୍ ତେବେ ନୂଆ ବୋଉ ଆଣିଦେଉ ସ୍ତ୍ରୀ ।'

(ମୁହଁରେ ଅଭିମାନ ଫୁଟି ଉଠିଲା)

ସବିତା ॥ ହଁ ମ, ମୁଁ ଯାଉଚି—ପାଣି ଫୁଟିବଣି ।

ମନୋଜ ॥ ପାଣି ଫୁଟିଚଣି ?

ସବିତା ॥ ତମ ପାଟି ଶୁଣି ମୁଁ କେଟଲିଟା ଚୁଲି ଉପରେ ବସେଇ ଦେଇଚି । ନଳ—(ଜାମାଟା ତା' ଆଡ଼କୁ ବଢ଼େଇ ଦେଇ)—ଆଉ ଅଳ୍ପ ଅଛି । ରଫୁ କରି ଦବୁଟି ।

ନଳ ॥ (ଜାମାଟା ସବିତା ହାତରୁ ନେଲା—ସବିତାର ପ୍ରସ୍ଥାନ—ଜାମାଟା ରଫୁ କରୁ କରୁ)

ନୂଆବୋଉ ହାତ ତିଆରି ସ୍ତ୍ରୀ' ସଜ ଭଲ, ନୁହେଁ ସତ ?

ମନୋଜ ॥ ତା'ଭି ସେଇ ସ୍ତ୍ରୀ'ର ଟେଷ୍ଟରେ ମୁଗ୍ଧ ହୋଇ ତ ମୁଁ ବାଡ଼ୁଅ-ଟ୍ରେଙ୍ଗୀର ସଭ୍ୟପଦରୁ ଚଡ଼ା ଖାଇଲି—

ନଳ ॥ ତମ ସ୍ତ୍ରୀ ଭ ଭଳେ ସେମିତି ଚଡ଼ା ଖାଇବେ—ଏ ଯୁଗର କୌଣସି ଉର୍ବଶୀ ବା ମେନକା ହାତୁଡ଼ରେ ପଡ଼ିଗଲେ ତାଙ୍କ ରଫା ଦଫା ଶେଷ—(ହସିଲା)

ମନୋଜ ॥ ସତେ ? ଅଚ୍ଛା ବେଶ୍ ! ତୁ ତ ଏ ଯୁଗର ଉର୍ବଶୀ ବା ମେନକାଙ୍କ ଅପେକ୍ଷା କୌଶଳ୍ୟ ଗୁଣରେ କମ୍ ନୋହୁ—ଦେଖାଯାଉ—

ନଳ ॥ (ଉଠିପଡ଼ି ନ୍ୟାକା ଗଳାରେ) ସତ ! ତମ ମୁଣ୍ଡ ବିଲ୍‌କୁଲ୍ ବିଗିଡ଼ି ଗଲଣି—ଥଟ୍ଟା କରିବାକୁ ଆଉ ଲୋକ ମିଳିଲେନି ତମକୁ—

ମନୋଜ ॥ ଆରେ ବ ବ--ଆଉ ଥଟ୍ଟା କରିବନି—ମୁଁ ଭୁଲି ଯାଇଥିଲି ଯେ, ତୁ ଆମର ଗୋଟିଏ କନଫାର୍ମଡ୍ ଓଲଡ୍-ମେଡ୍—

ନଳ ॥ ଫେର୍ ! କହୁଦେଉଚ ସତ, ମତେ ତମେ ଏମିତି ଓଲ୍ଡ-ମେଡ୍ ଫୋଲଡ୍ ମେଡ୍ କହିବନି ।

ମନୋଜ ॥ ଯାହା କହିଲେ ତୁ ତ ରାଗିଲୁ—ମୁଁ ଏବେ କରେ କଅଣ ? ତୁ ପରା ବାହା ହେବୁନି ବୋଲି ସାଫ୍ ସାଫ୍ କହି ଦେଇଚୁ—ତେବେ ଓଲଡ୍-ମେଡ୍ ନୁହଁ ଆଉ କଅଣ !

ନଲ ॥ (ପୁନରସ୍ତୁ ବସିପଡ଼ି) ନିଜ ଭଉଣୀ ସାଥିରେ ଏମିତ ଇତରଙ୍କ ଭଳି ଥଟ୍ଟା କରୁଚ କ'ଣ, ଏତେ ପାଠଶାଠ ପଢ଼ି......(ଜାମାର ରଫୁରେ ମନ ଦେଲ)

ମନୋଜ ॥ (ହସି ହସି ରେଡ଼ିଓ ପାଖକୁ ଉଠି ଗଲ ଓ ରେଡ଼ିଓଟା ବନ୍ଦ କରି ଦେଇ) ତୁ ତ ଏତେ ରାଗି ମିଜାଜର କେବେ ନ ଥିଲୁ ନଲ ! ତୋର ଗୋଟାଏ କିଛୁ ହୋଇଛି ନିଶ୍ଚୟ ।

ନଲ ॥ (ସୂତାଟା ଛିଣ୍ଡାଇବାକୁ ଦାନ୍ତ ପାଖକୁ ନେଲବେଳେ ହଠାତ୍ ଚିତ୍କାରକରି ଜାମାଟା ଫୋପାଡ଼ି ଦେଇ ଉଠିପଡ଼ଲ—ମୁହଁଟା ତା'ର ଅସମ୍ଭବ ଭାବରେ ବିକୃତ, ପାଟିରୁ ବାହାରିଲ ଘୃଣାରେ) ଇ...ଇ...ଇଃ ! !

ମନୋଜ ॥ (ବୁଝି ନ ପାରି) ଏଁ ! କ'ଣ ହେଲ ନଲ ? ଛୁଞ୍ଚିଟା ପାଟିରେ ଫୋଡ଼ି ହୋଇଗଲ ନା କ'ଣ । (ନଲ ପାଖକୁ ଆସି) ଦେଖି ଦେଖି—

ନଲ ॥ (ଘୃଣାରେ ନାକ କୁଞ୍ଚେଇ କରି ଓ ପାଖରେ ଥୁଆ ହୋଇଥିବା ଭ୍ୟାନିଟି-ବ୍ୟାଗ୍‌ରୁ ଅତରଦିଆ ରୁମାଲଟା ବାହାର କରି ନାକ ପାଖରେ ଦେଇ) ଛିଇ ! ତମେ ମଣିଷ ନା ଜାନୁଆର୍ ? କଅଣ ତମେ ?

ମନୋଜ ॥ ଆରେ ମଣିଷ ଭିତରଟା ତ ଜାନୁଆର—ତେଣୁ ମୁଁ ଉଭୟ, କ'ଣ ହେଲ କହ—

ନଲ ॥ କଅଣ ହେଲ ବୁଝି ପାରିଲନ ?—ତମ ନାକ ପାଖରେ ନେଇ ସେ ମଇଳା ଗନ୍ଧିଆ ଜାମାଟାକୁ ଟିକିଏ ଧରିଲ—ଇସ୍ ! କି ବିକଟ ଝାଳ ଗନ୍ଧ...

ମନୋଜ ॥ (ଆଶ୍ୱସ୍ତ ହୋଇପଡ଼ି) ଓଃ ! ଏଇଥିପାଇଁ ଏତେ ଲମ୍ଫ ଝମ୍ପ ? ମୁଖ ବିକୃତି, ଆଉ ନାସିକା କୁଞ୍ଚନ ?

ନଲ ॥ ...ମୋତେ ଜାଣି କି, ମୁଁ ଝାଳଗନ୍ଧ ମୋଟେ ସହି ପାରେନି ବୋଲି ?

ମନୋଜ ॥ (ମୃଦୁ ହୁଙ୍କାର) ଖୁବ୍ ଭଲ କଲୁ—ହେଲେ ତୋ ନୂଆବୋଉ ବସ୍ତୁର ଜାଣିକି ବୋଧହୁଏ—

ନଲ ॥ ଓଃ ! ତା'ହେଲେ ନିଶ୍ଚୟ ଜାଣିଶୁଣି ସବୁ ଏ ବଦମାସି କରିଛ—

(ଘୁ'ଧରି ଏଡକବେଳେ ସବିତାର ପ୍ରବେଶ)

ସବିତା ॥ କ'ଣ ହେଲ ?

ମନୋଜ ।। ତମେ ଜାଣିଶୁଣି ଏଇ ଉତ୍କଟ ଝାଳୁଆ ଗନ୍ଧର ଜାମାଟା ତାକୁ ରଫୁ କରିବାକୁ ଦେଇଚ ?

ସବିତା ।। (ଦୁଃଖିତ ଭାବରେ) ବିଶ୍ୱାସ କର ନଳି—ମୋର ଆଦୌ ଖିଆଲ ନଥିଲା—

ମନୋଜ ।। ତୋର ବାହା ନ ହେବା ମତଟାକୁ ମୁଁ ଆଜଯାଏ ସମର୍ଥନ କରୁ ନଥିଲି; କିନ୍ତୁ ବର୍ତ୍ତମାନ କରିବାକୁ ପ୍ରସ୍ତୁତ ଅଛୁ, ନଳି —
(ନଳି ପ୍ରଶ୍ନସୂଚକ ଦୃଷ୍ଟିରେ ମନୋଜ ଆଡ଼େ ଚାହିଁଲା—ମନୋଜ ଚା' କପ୍‌ଟା ଉଠେଇ ନେଇ ପିଇବାକୁ ଆରମ୍ଭ କରୁ କରୁ)
ଝାଳ ଗନ୍ଧଟା ପ୍ରତି ତୋର ଯେଉଁ ପ୍ରବଳ ପ୍ରତିକ୍ରିୟା ନା, ତୁ ବାହାହେଲେ ସୁଖୀ ହବୁନି ।

ନଳି ।। ବାହା ସହିତ ଝାଳ ଗନ୍ଧର କି ସମ୍ପର୍କ ମୁଁ ମୋଟେ ବୁଝି ପାରୁନି—

ସବିତା ।। ତୋର ମୋଟେ ବୁଝିବା ଦରକାର ନାହିଁ, ନଳି—(ମନୋଜକୁ ଚାହିଁ) ତମର ଏସବୁ ବାଜେ ଥିଓରି ରଖ ତ—

ମନୋଜ ।। (ହସି ହସି) ଆରେ ତମେ ଥିଲେ ଦେଖିଥାନ୍ତ ନଳି ଜାମାଟା ରଫୁ କରିସାରି ଦାନ୍ତରେ ସୂତାଟା ଛିଣ୍ଡେଇବାକୁ ଗଲାବେଳେ ଚମକି, ଚିତ୍କାର କରି ଚିମିଡ଼ି ଭାବରେ ଜାମାଟାକୁ ଫୋପାଡ଼ି ଦେଲା ନା, ମୁଁ ତ ଭାବିଲି ସାପଫାପ କାମୁଡ଼ି ଦେଲା କି କ'ଣ ?

ସବିତା ।। (ହସି ହସି ଜାମାଟା ତଳୁ ଉଠାଇ ନେଇ) ମଲ—ଝାଳ ଗନ୍ଧଟା ଅତି ଉତ୍କଟ—ଯେ କେହି ସେୟା କରିଥାନ୍ତା—

ମନୋଜ ।। (ରସିକତା କରି) କିନ୍ତୁ ମୋର ଏ ଝାଳୁଆ ଜାମାଗୁଡ଼ା ତ କେତେଥର ତମ ନାକ ପାଖକୁ ଯାଉଛି ବୋଲି ମୋର ଧାରଣା—

ସବିତା ।। ଗୁଡ଼ାଏ ବାଜେ କଥା ଗପିବା ତମର ଅଭ୍ୟାସ ହୋଇଗଲାଣି ।

(ନଳି ବିରକ୍ତଭାବ ଦେଖେଇ ଉଠି ଭିତର ଆଡ଼କୁ ଚାଲି ଯାଉଥିଲା, ସବିତା ତା'ର ଶାଢ଼ୀ କାନିଟା ଧରିପକାଇଲା—ନଳି ଠିଆ ହୋଇ ଯାଇ ସବିତା ମୁହଁକୁ ଚାହିଁଲା; କିନ୍ତୁ ସବିତା ଚାହିଁଥିଲା ଦାଣ୍ଡଦୁଆର ଆଡ଼େ···ଖସି ଯାଇଥିବା ମୁଣ୍ଡର ଓଢ଼ଣାଟା ମୁଣ୍ଡ ଉପରକୁ ଟାଣିଦେଇ)

ତମର ଡାକ୍ତରବନ୍ଧୁ ଆସିଲେ ବୋଧହୁଏ—(ମନୋଜ ଚାହିଁଲା ଦୁଆର ଆଡେ—ଠିକ୍ ପର୍ଦ୍ଦା ପାଖରେ ରବି ଠିଆ ହୋଇଚି—ସୁନ୍ଦର ସ୍ୱାସ୍ଥ୍ୟବାନ୍ ଓ ଲମ୍ବା ଚେହେରା, ମୁହଁର ଗଠନଟିରେ ସୌନ୍ଦର୍ଯ୍ୟ ସାଙ୍ଗେ ସାଙ୍ଗେ ଗୋଟାଏ ଦୃଢ଼ତା ପ୍ରକାଶ ପାଏ; କିନ୍ତୁ ସେ ଦୃଢ଼ତା ଦେଖି

ଭସ୍ମରେ ଦୂରେଇ ଦିବା ବଦଳରେ ରବି ପ୍ରତି ଆକୃଷ୍ଟ ହୋଇପଡ଼ିବାର ସମ୍ଭାବନା ବେଶୀ—ରବି ଧୋତି ପଞ୍ଜାବୀ ପିନ୍ଧିଛି—ବେଶ ପାଟଲୁ ଦି'ଟା ବୋତାମ ଖୋଲା—ପଞ୍ଜାବୀର ହାତ କହୁଣୀଯାଏ ଗୁଡ଼ାହୋଇଛି । ପଞ୍ଜାବୀ ଫାଙ୍କରୁ ଛାତିର ଯେଉଁ ଅଂଶତକ ଦେଖାଯାଏ, ସେତକ ଲୋମଶ—ହାତର ଦେଖାଯାଉଥିବା ଅଂଶ ମଧ୍ୟ ଲୋମଶ—ମୋଟକଥା କେବଳ ମୁହଁଟି ଛାଡ଼ିଦେଲେ ସମଗ୍ର ବପୁଟିରେ ଆଦିମାନବର ବର୍ବରତା ପ୍ରକାଶ ପାଏ)

ମନୋଜ ।। କରେ ବୁଢ଼ା ବ୍ୟାଚେଲର—ଆ ଭିତରକୁ—ତୋର ଦାମ୍ପତ୍ୟ ହୀନତା ଉପରେ ଇଆଡେ ବହୁତ ଟିପ୍ପଣୀ ମତେ ଶୁଣିବାକୁ ପଡ଼ିଲଣି । ତୁ ଯଦି ଗୋଟାଏ ଜରୁରୀ ରୋଗୀ ଦେଖିବାକୁ ଯାଉ ଯାଉ ରାସ୍ତାରେ ଏମିତି ଠିଆ ହୋଇ ଗପ ଯୋଡ଼ିଦେଉ ନା, ପ୍ରଫେସନ୍ ମାଟି ହେବାକୁ ବେଶି ଡେରି ଲାଗିବନି—

ରବି ।। (ଭିତରକୁ ଆସିଲା ବିସ୍ମିତ ମୁଖରେ) ଜରୁରୀ ରୋଗୀ ଏଠି ପୁଣି କିଏ ?

ମନୋଜ ।। (ଅପ୍ରତିଭ ହୋଇ) ଆରେ ତତେ କହୁନାହିଁ ମୁଁ (ନଳିନୀକୁ ଦେଖେଇ ଦେଇ) ମାନେ ଆମ ନଳିନୀର ଅଙ୍ଗୁଠି (ନଳିନୀ ମନୋଜକୁ ତୀବ୍ର ଭର୍ତ୍ସନାମିଶା କଟାକ୍ଷ କଲା)

ରବି ।। (ଟେବୁଲ ଉପରେ ଇମର୍ଜେନ୍ସି ବ୍ୟାଗ୍‌ଟା ରଖି) ବୁଝିଲି । (ରବି ଦି' ହାତ ଟେକି ନଳିନୀ ଓ ସବିତାକୁ ନମସ୍କାର କଲା—ସବିତା ସ୍ମିତ ହସି ପ୍ରତି ନମସ୍କାର ଜଣାଇଲା । ନଳିନୀ କେବଳ ନୀରବରେ ନମସ୍କାର କଲା ; କିନ୍ତୁ ଆଖିରେ ଥିଲା ଗୋଟାଏ ବିସ୍ମୟ ଆଉ କୌତୂହଳ)

ମନୋଜ ।। ରବି ! ଏ ଦୁହିଁଙ୍କ ସାଥିରେ ଟିକିଏ ପରିଚୟ କରେଇ ଦିଏଁ—ତୋ, ପରିଚୟ ଆଗରୁ ଏମାନେ ପାଇ ସାରିଛନ୍ତି—

(ନଳିନୀକୁ ନିର୍ଦ୍ଦେଶ କରି)

ମୋର ଶ୍ରେଷ୍ଠ ଭଉଣୀ ନଳିନୀ । ଇଂଲଣ୍ଡରେ ଅଧ୍ୟାପିକା ହେବାର ଅପେକ୍ଷାରେ—ଆଉ (ସବିତାକୁ ନିର୍ଦ୍ଦେଶ କରି) ଶ୍ରୀମତୀ ସବିତା ଦାସ—ଯିଏ ମୋର ବାଡ଼ୁଅ ଟୁଙ୍ଗୀ ସାମନାରେ ତା'ର ନୃତ୍ୟଛନ୍ଦରେ ଆଉ ଅପରୂପ ସଙ୍ଗୀତ ମୂର୍ଚ୍ଛନାରେ ମୋର ବାଡ଼ୁଅ ରହିବାର କଠୋର ତପସ୍ୟା ଭଙ୍ଗ କଲା—

ସବିତା ।। (ସ୍ମିତ ହସି) ଡାକ୍ତର ବାବୁ—ଏ ସବୁ ଷ୍ଟେଟାରସ୍‌ମାନଙ୍କୁ ଯେ ଆପଣ କିମିତି ବାଡ଼ୁଅ-ଟୁଙ୍ଗୀର ମର୍ଯ୍ୟାଦା ରଖିଥିଲେ ?

ରବି ॥ ଆପଣମାନଙ୍କ ଭଳି ଜଣେ ଜଣେ ବିଶ୍ୱବିଜୟିନୀଙ୍କ ସାମନାରେ ଯେ-କୌଣସି ସାହସୀ ଯୋଦ୍ଧା ଚେତ୍ତାର ହୋଇଯାଇ ପାରେ।

ନଳି ॥ ଆପଣ କି ?

ରବି ॥ (ନଳିକୁ ଚାହିଁ) ମୁଁ ? (ଅନ୍ୟଆଡ଼େ ଚାହିଁ) ମୋ କଥା ଏ ପର୍ଯ୍ୟନ୍ତ ଶିବ ଦେଖିନି।

ସବିତା ॥ ଶିବ ଦେଖିବେ ଆଉ କ'ଣ ?—ଆପଣ ତ ଏବେ ହଠାତ୍—

ନଳି ॥ (ସବିତା ଆଡ଼କୁ ଚାହିଁ) ନା, ନୂଆଟବାହୁ—ଡାକ୍ତର ବାବୁ ଏ ଯୁଗର ସ୍ରଷ୍ଟା—

ରବି ॥ (ଅସନ୍ତୋଷ ପ୍ରକାଶ କରି) ଏ କଥା କିଏ କହିଲା !

ନଳି ॥ କିଏ ଆଉ କହିବ ?—ଆପଣଙ୍କର ବନ୍ଧୁ ଆଉ ଭକ୍ତ।

ରବି ॥ ଆପଣଙ୍କ ଚୂଡ଼ା ଆଙ୍ଗୁଠି କ'ଣ ଯନ୍ତ୍ରଣା ଦେଉଛି ?

ନଳି ॥ ଆପଣ କିପରି ଜାଣିଲେ ?

ରବି ॥ (ପ୍ରଶ୍ନସୂଚକ ଦୃଷ୍ଟିରେ ନଳି ଓ ପରେ ମନୋଜକୁ ଚାହିଁ) ମୁଁ କିପରି ଜାଣିଲି ? ମତେ ପତ୍ର ମନୁ ପାଇଁ ଖବର ଦେଲା—କହିଲା ଖୁବ୍ ଶୀଘ୍ର ଆସିବାକୁ—

ନଳି ॥ (ରେଡିଓ ପାଖକୁ ଯାଇ ଓ ତା' ଉପରେ ଗୋଟିଏ ହାତର କହୁଣୀ ରଖି ଏବଂ କଡ଼େଇ ଚାହିଁ)
ଆପଣ ଖୁବ୍ ଶୀଘ୍ର ଆସିଛନ୍ତି ?

ରବି ॥ ମୁଁ ଦୁଃଖିତ—ମିସ୍ ଦାସ—

ମନୋଜ ॥ ଦେଖ୍ ନଳି—ପ୍ରଥମରୁ ତୁ ତୋ ବିଷୟରେ ଗୋଟାଏ ଖରାପ ଧାରଣା ଦେଲୁଣି ରବିକୁ—

ନଳି ॥ ଭଲ ଧାରଣା ଦେବାର କୌଣସି ଆବଶ୍ୟକତା ଥିଲା ନା କ'ଣ ?

ରବି ॥ (ଗମ୍ଭୀର ହୋଇ) ପଟିଟା ଖୋଲନ୍ତୁ ତ—

ନଳି ॥ (ଧୀରେ ଧୀରେ ଡାକ୍ତରଙ୍କ ପାଖକୁ ଆସି ଅସ୍ଥିର ଓ ସୋଫା ଉପରେ ବସିପଡ଼ି ଉତ୍କଣ୍ଠିତ କଣ୍ଠରେ)
ଅପରେସନ୍ କରିବେନି ତ ?

ରବି ॥ ନା—ଘଦ ପାଚିଥାଏ, ଟିକେ ଛୁରୀ ଲଗେଇ ଦେଲେ ଚଳିବ—

ନଳି ॥ ତା'ମାନେ ତ ଅପରେସନ୍—(ହାତରୁ ପଟିର ଗଣ୍ଠିଟା ଫିଟେଇବାକୁ ଆରମ୍ଭ କଲା)

ମନୋଜ ॥ ରବି, ନଳି ଆମର ଇଂରାଜୀ ଅଧ୍ୟାପିକା ହେବାକୁ ଯାଉଛି—ତୁ ଯଦି ତାକୁ ଇଂରାଜୀ ଶିଖାନ୍—

ରବି ॥ (ସାମାନ୍ୟ ହସି) ନା ସେ ଧୃଷ୍ଟତା ମୋର ନାହିଁ—(ନଳି ହାତରୁ କନା ଫିଟେଇବା ବନ୍ଦ କରିବା ଦେଖି) କ'ଣ ହେଲା ? ଖୋଲନ୍ତୁ ନା ପଟିଟା ।

ସବିତା ॥ (ହସି) ସିଏ ତ ଚଢ଼ି ଗଲାଣି, ଆଉ ପଟି ଖୋଲିବ କ'ଣ—

ରବି ॥ (ସବିତାର କଥାପ୍ରତି କର୍ଣ୍ଣପାତ ନ କରି ତା ବ୍ୟାଗରୁ ଗୋଟାଏ ତୁଳା ଓ ଗୋଟାଏ ଚମୁଚ ବାହାର କରି ସବିତା ଆଡ଼େ ଚାହିଁ)
ଏ ଦୁ'ଟା ଟିକିଏ ବଦଳ କରିବାକୁ ପଡ଼ିବ ।

ସବିତା ॥ ଦିଅନ୍ତୁ—ମୁଁ ବଦଳ କରି ଆଣି ଦେଉଚି—(ରବି ହାତରୁ ତୁଳା ଓ ଚମୁଚ ନେଇ ପ୍ରସ୍ଥାନ)

ମନୋଜ ॥ ମୁଁ ତୋତେ କି ଭାବରେ ସାହାଯ୍ୟ କରିପାରେ ?

ରବି ॥ (ମନୋଜକୁ ଚାହିଁ) ତୁ ? ହଁ ପାରିବୁ...ତୁ ଏଠୁ ଚାଲିଯା......

ମନୋଜ ॥ (ବିସ୍ମିତ ଭାବରେ ରବିକୁ ଚାହିଁ) ମୁଁ ଚାଲିଯିବି ? ଅଚ୍ଛା···ମୁଁ ଯାଇଁ ତେବେ ସବିତାକୁ ସାହାଯ୍ୟ କରେ—

ରବି ॥ ହଁ, ବରଂ ସେଇୟା କର......

ମନୋଜ ॥ ବେଶ୍ ବେଶ୍—(ମନୋଜର ପ୍ରସ୍ଥାନ)

ରବି ॥ ଦେଖି ହାତଟା—

ନଳି ॥ (ହାତଟାକୁ ଦୂରେଇ ନେଇ) ମୋ ଆଙ୍ଗୁଠି କିଛି ହୋଇନ ।

ରବି ॥ Don't be silly—ଫିଟାନ୍ତୁ ପଟିଟା—

ନଳି ॥ (ଟିକିଏ ବିସ୍ମିତ ଭାବ ଦେଖେଇ ଡାକ୍ତରଙ୍କ ମୁହଁକୁ ଚାହିଁଲା—ସେଇ ଚାହିଁଥିବା ଅବସ୍ଥାରେ ହାତରୁ ପଟିଟା ଖୋଲିବାବେଳେ ଗଣ୍ଠିଟା ଉପରେ ହାତ ନ ପଡ଼ି ଇଆଡେ ସିଆଡ଼େ ପଡ଼ିଲା ।)

ରବି ॥ ଅଙ୍ଗୁଠିଆଡ଼େ ଚାହିଁ ଫିଟାନ୍ତୁ—

ନଳି ॥ (ଚମକି ଆଙ୍ଗୁଠି ଆଡ଼େ ଚାହିଁଲା—ତା'ପରେ ଗଣ୍ଠିଟା ଫିଟାଇବାକୁ ଚେଷ୍ଟା କଲା—ଫିଟେଇ ନ ପାରିବାରୁ ରବି ନଳିର ହାତଟା ଟାଣିନେଇ ଗଣ୍ଠି ଫିଟେଇବାରେ ଲାଗିଲା, ଅନ୍ୟ କେଉଁଆଡ଼େ ନଚାହିଁ)
—ଆପଣ ଆପଣଙ୍କ କାର୍‌ରେ ଆସିଲେ ପରା ?

ରବି ॥ ହଁ—

ନଳି ॥ କାର୍‌ରୁ ଓହ୍ଲେଇ ବେଗୀ ସହିତ କଥାବାର୍ତ୍ତା କରୁଥିଲେ ?

ରବି ॥ ହଁ—(କିଛି ସମୟ ପରେ) ଏ ପ୍ରଶ୍ନ କାହିଁକି ?

ନଳି ॥ ନାଇଁ ଏମିତି । (ଟିକିଏ ରହି) ଗପ କଲାବେଳେ ବର୍ଷା ହେଲା କି ?

ରବି ॥ ନା ତ—ଓଃ ! ବୁଝିଲି - ଝାଳରେ ମୋ ଜାମାଟା ଭିଜି ଯାଇଚି ।

ନଳ || (ଚମକି) ଏଁ ! ଝାଳରେ ? (ରୁମାଲଟା ଡ଼ାହାଣ ହାତରେ ନାକ ପାଖକୁ ନେଇ ଯାଇ) ଏ ଶୀତ ଦିନରେ ବି ଆପଣଙ୍କ ଦେହରୁ ଝାଳ ବୁହେ ?

ରବି || ହଁ ବୁହେ......ବିଚିତ୍ର କଥା— ନୁହେଁ ? (ନଳକୁ ନିରୁତ୍ତର ଦେଖି ରବି ମୁହଁ ଟେକି ନଳ ମୁହଁକୁ ଚାହିଁଲା।— ନଳକୁ ନାକ ପାଖରେ ରୁମାଲ ଦେଇଥିବାର ଦେଖି ତା' ହାତ ହଠାତ୍ ଛୁଟିଦେଲା ଓ ଦୂରେଇଗଲା)
ମୁଁ ବଡ଼ ଦୁଃଖିତ, ମିସ୍ ଦାସ ।

ନଳ || (ନିରୁତ୍ସାହିତ ଗଳାରେ) ନା ନା, ଏଥିରେ ଦୁଃଖିତ ହେବାର କଅଣ ଅଛି...ଏମିତି ତ ଅନେକଙ୍କ ଦେହରୁ ଶୀତଦିନରେ ବି ଝାଳ ବୁହେ ।

ରବି || ବୁହେ—ହେଲେ ମୋ' ଦେହରୁ ବୋହିବାଟା—

ନଳ || କାହିଁକି ? (ପଟିର ବାକି ଅଂଶତକ ଫିଟେଇ କନାଟା ତଳେ ପକେଇ ଦେଲା)

ରବି || ମୁଁ ଡାକ୍ତର କି ନା—ବହୁ ରୋଗୀଙ୍କର ଖୁବ୍ ପାଖରେ ବସେ । ଝାଳଗୁଡ଼ା ଆପଣଙ୍କ ଭଳି ତ ଫେର୍ ଅନ୍ୟ କୌଣସି ରୋଗୀର ଆଲର୍ଜି ଥାଇପାରେ ? (ହଠାତ୍ ଠୋ ଠୋ ହୋଇଁ ହସି-ଉଠିଲା)

ନଳ || କଅଣ, ହସିଲେ ଯେ !

ରବି || ବୁଝିଲେ, ମିସ୍ ଦାସ—ନୋ ଓ୍ୱାରି— ଏ ଝାଳଟା ଦିନେ ହୁଏତ ମୋର ବ୍ୟବସାୟ ମାଟି କରିଦେବ ।

ନଳ || (ସାମାନ୍ୟ ହସି) ସେ ଭୟ କରନ୍ତୁ ନି— ମୋ ଭଳି ରୋଗୀ ଆପଣ ବେଶି ପାଇବେନି । ହଉ ଦେଖନ୍ତୁ ନା ଅଣ୍ଠିଟା କଅଣ ହୋଇଛି ।

ରବି || ପାଚିଛି—କୁଶି ଲଗେଇବାକୁ ପଡ଼ିବ ।

ନଳ || ନା ନା, ଭୀଷଣ କାଟିବ ।

ରବି || କାଟିବ ନି—

ନଳ || ବା...ରେ ! ଆପଣ କିମିତି ଜାଣିବେ ମତେ କାଟିବ କି ନାହିଁ ?

ରବି || ଡ଼ାକ୍ତରମାନେ ଜାଣିପାରନ୍ତି (ପକେଟରୁ ରୁମାଲ କାଢ଼ି ବେକ ଓ କପାଳରୁ ଝାଳ ପୋଛିଲା)

ନଳ || ମୋଟେ ଜାଣି ପାରନ୍ତିନି...ମୁଁ କହୁଦେଉଛି—କାଟିଲେ କିନ୍ତୁ...

ରବି || ଫିସ୍ ଟା ଦେବେନି ? ଅଚ୍ଛା; ଦେବେନି, ତା ହେଲେ—

ନଳ ।। ଫିସ୍ ପାଇବାର ଆଶା ରଖି ଆସିଛନ୍ତି ନା କ'ଣ ? (କିଛି ସମୟ ରହି) ସବୁର ଯିମିତି ଖରାପ ଦିଗ ଅଛି, ସେମିତି ଭଲ ଦିଗ ମଧ୍ୟ ଅଛି ।

ରବି ।। (ନଳ ମୁହଁକୁ କିଛି ସମୟ ଚାହିଁବା ପରେ) ହଁ ନିଶ୍ଚୟ ଅଛି, ଝାଳ ବହିବା ଦ୍ୱାରା ରକ୍ତ ବିଶୁଦ୍ଧ ହୁଏ ।

ନଳ ।। ଗରମ ଜାମା ପୋଷାକର ଖର୍ଚ୍ଚରୁ ମଧ୍ୟ ମଣିଷ ରକ୍ଷା ପାଏ ।

ରବି ।। ହଁ, କେବଳ ଧୋତି ପଞ୍ଜାବୀରେ ଚଳିଯିବ ।

ନଳ ।। ଆପଣ ଗୋଟାଏ ଜାମା ଥରକରୁ ତ ବେଶି ପିନ୍ଧୁ ନଥିବେ ?

ରବି ।। ଜାମାଟା ମଇଳା ନ ହେବାପାଏ ମୁଁ ପିନ୍ଧେ ।

ନଳ ।। (ଈଷତ୍ ନାସିକା କୁଞ୍ଚନ କରି ଓ ବିସ୍ମୟ ପ୍ରକାଶ କରି) ଝାଳ ଗନ୍ଧ କରେନି !

ରବି ।। ମୁଁ ସେଥିରେ ଅଭ୍ୟସ୍ତ । ତା'ଛଡ଼ା ତିରିଶ ଦିନକୁ ତିରିଶଟା ଜାମା ତିଆରି କରିବା ସମ୍ଭବ ନୁହେଁ । ଧୋବା ପନ୍ଦର ଦିନରେ ଥରେ ଆସେ ।

(ସବିତା ଗୋଟିଏ ଡେକ୍‌ଚିରେ ଲୁଚି ଓ ଚମୁଚା ଫୁଟେଇ ଆଣିଲା)

ନଳ ।। ମାଗଣା ରୋଗୀ ଦେଖିଲେ ଅବଶ୍ୟ ସମ୍ଭବ ନୁହେଁ ।

ରବି ।। ଆପଣ ମୋ ବିଷୟରେ ବହୁତ ସମ୍ବାଦ ରଖିଛନ୍ତି ।

ସବିତା ।। ନ ରଖି ଉପାୟ ନାହିଁ । ଆଜିକାଲି ଯେତେ ରୋଗ ବଢ଼ି ଗଲଣି ନା, ଡାକ୍ତରମାନଙ୍କୁ ଭିଜିଟ୍ ଦେବାରେ ରୋଜଗାରତକ ସରିଯିବ । ନଳରୁ ପାଣି ଥଣ୍ଡା ହୋଇ ଆସିଲଣି ।

ରବି ।। ମୋ ହାତଟା ଟିକେ ଧୁଏଁ ସାବୁନରେ । (ବ୍ୟାଗରୁ ସୋପ ସଲ୍ୟୁସନ ଶିଶିଟା ବାହାର କରି ସେଥିରୁ ଟିକିଏ ହାତରେ ନେଇ ଦୁଇ ହାତରେ ଘଷିଲା ।)

ସବିତା ।। ଆସନ୍ତୁ ଭିତରେ Shink ଅଛି ।

(ସବିତା ପଛେ ପଛେ ରବିର ପ୍ରସ୍ଥାନ ବେଳେ ମନୋଜ ଦୁଆର ପାଖରେ ଦେଖାଗଲା—ତା' ପଛେ ପଛେ ଚାକର ନଧିଆ ଟ୍ରେରେ ଚା'ର ସରଞ୍ଜାମ ଧରି ଠିଆହେଲା ।)

ମନୋଜ ।। କୁଆଡ଼େ ବାହାରିଲୁରେ !

ସବିତା ।। ହାତ ଧୋଇବାକୁ ଯାଉଛନ୍ତି ।

ମନୋଜ ।। ଶୀଘ୍ର ଆ' । ଚା'ଟା ଥଣ୍ଡା ହୋଇଯିବ । ମୁଁ ନିଜେ ତିଆରି କରିଛି ।

ରବ || ତା'ହେଲେ ମୋର ଏତେ ତର ତର ହେବା ଦରକାର ନାହିଁ ।
(ସବିତା ଓ ରବିର ହସି ହସି ପ୍ରସ୍ଥାନ—ମନୋଜ ଭିତରକୁ ଗଲା—କାଧିଆ ଟ୍ରେଟା ଟେବୁଲ ଉପରେ ରଖିଦେଇ ଚାଲିଗଲା ।)

ମନୋଜ || (ଗୋଟିଏ ସୋଫାରେ ବସିପଡ଼ି) କହେ ନଲ; ଏଥର କହ, ଡାକ୍ତର ସବିଶେଷ ବଂଶୀୟ ନା ସୂର୍ଯ୍ୟ ବଂଶୀୟ ।

ନଲ || (ନାସିକା କୁଞ୍ଚନ କରି) ବର୍ଣ୍ଣଙ୍କର—ଆର୍ଯ୍ୟ ଓ ଅନାର୍ଯ୍ୟର ମିଶ୍ରଣ ।

ମନୋଜ || ସତେ !

ନଲ || ଡ଼ାକ୍ତର ବାବୁଙ୍କ ଦେହସାରା ଚକଚକିଆ କେମ । ଠିକ୍ ଗୋଟିଏ ଗରିଲା ଭଳି । ବୁଝିଲ ଭାଇ—କେବଳ ମୁହଁଟିକୁ ଛାଡ଼ିଦେଲେ ସମଗ୍ର ବପୁଟିରେ ଆଦିମାନବର ବଂଶରତା । ତମେ ଭାଇ ସିନେମା ଷ୍ଟାର ଉଦ୍ଦୀପ କୁମାରକୁ ତ ଦେଖିଥିବ ।

ମନୋଜ || ତୋର ପର୍ଯ୍ୟବେକ୍ଷଣ ଶକ୍ତି ବେଶ୍ ତୀକ୍ଷ୍ଣରେ ନଲ ! କିନ୍ତୁ ନାରୀମାନେ ତ ଠିକ୍ ଏଇ ଧରଣର ପୁରୁଷଙ୍କୁ ବେଶି ପସନ୍ଦ କରନ୍ତି ।

ନଲ || (ମନୋଜ ମୁହଁକୁ ଚାହିଁ) ଇସ ! (ରବି ହାତ ଧୋଇ ଫେରିଲା ଓ ନଲ ପାଖରେ ବସିଲା—ନଲ ମୁହଁରେ ଭୟର ଚିହ୍ନ ଓ ସବିତାର ପ୍ରବେଶ)

ସବିତା || ଡ଼ାକ୍ତର ବାବୁ, ଆଗ ଗୁ'ଟା ଖାଇ ନିଅନ୍ତୁ । ଥଣ୍ଡା ହୋଇଯିବ ।

ରବ || (ଜେକ୍‌ଟରୁ ଛୁରୀଟା କାଢ଼ି) ଥଣ୍ଡା ହେଉ. କିନ୍ତୁ ଦୁଃଖ ନାହିଁ । ମଲୁ ହାତ ଚାଅଁଶ ଗୁ'ତ ! ଅଚ୍ଛା, ମୋ ବ୍ୟାଗରୁ ତୁଳା ଓ ବ୍ୟାଣ୍ଡେଜ ବାହାର କରନ୍ତୁ ମିସେସ୍ ଦାସ । (ନଲଆଡ଼େ ଚାହିଁ)
ହୁଁ, ଦେଖେ ମିସ୍ ଦାସ ।

ନଲ || (ଭୟଭୀତ ସ୍ୱରରେ) କାଟିବ ।

ରବ || Don't be fussy-ଦେଖାନ୍ତୁ ହାତଟା ।

ନଲ || (ହାତ ବଢ଼ାଇଦେଲା ଓ ମନୋଜ ଆଡ଼େ ବକଲ ଆଖିରେ ଚାହିଁଲା)

ମନୋଜ || (ନଲ ପାଖକୁ ଯାଇ) ଆରେ ଏଥିରେ କ'ଣ ଅଛି ମ —ଟିକିଏ ଛୁରୀ ମୁନ ବାଜିଗଲେ ପୂଜ ବୁଢ଼ା ବାହାରିଯିବ । (ନଲ ଦାନ୍ତ ଓଠ ଚିପି ଅନ୍ୟଆଡ଼େ ମୁହଁ ଘୁରେଇ ଆଖି ବୁଜିଦେଲା—ଡାକ୍ତର ଅଙ୍ଗୁଠିରେ ଛୁରୀଟା ସାମାନ୍ୟ ଟିକିଏ ଲଗେଇ ଦେଲାମାତ୍ରେ ବୁଢ଼ାଏ ପୂଜ ବାହାର ଆସିଲା—)

ରବ || ମିସେସ୍ ଦାସ, ତୁଳା ଟିକିଏ—
(ସବିତା ତୁଳା ଦେଲା—ତୁଳାରେ ପୂଜରକ୍ତ ପୋଛି ଦେଇ ବାନ୍ଧିଲା ଦେଲକୁ)

ନଳ ॥ ଆରେ, କାଟିବାକୁ ଏତେ ଡେରି ଲାଗୁଚ କ'ଣ ମ ?
(ସବିତା ଫେଁ କରି ହସିଦେଲା— ଅଭିମାନଭରା କଣ୍ଠରେ) ହୁଁ, ରୁ ହସିବୁନି କାହିଁକି ନୂଆବୋହୂ--ତୋର ଏମିତି ହେଉଥିଲେ—।

ମନୋଜ ॥ ଆରେ ସବୁ ସରିଗଲାଣି ।
(ନଳ ଚାହିଁଲା ତା ଆଙ୍ଗୁଠି ଆଡ଼େ—ରବି,·ସବିତା ହାତରୁ ବ୍ୟାଣ୍ଡେଜ ନେଇ ନଳ ଆଙ୍ଗୁଠିରେ ବାନ୍ଧି ଦେଲା ଓ ହାତ ଧୋଇବାକୁ ବାହାରିଗଲା)

ନଳ ॥ (ହସି) ମୁଁ ତ କିଛି ଜାଣି ପାରିଲିନି ।

ମନୋଜ ॥ କମିଟିଆ ଡ଼ାକ୍ତରର ହାତ ଲାଗିଛି; ସେଇଟା ବୁଝିବା ଦରକାର ।

ନଳି ॥ ହଁ —ସ୍ୱରତ ଗୋଟାଏ ଅପରେସନ—ମୁଁ ତ ସେଫ୍ଟିପିନ୍‌ରେ ଫୋଡ଼ି ପୂଜଚୁଡ଼ା ବାହାର କରିଦେଇ ପାରିଥାନ୍ତି ।

ମନୋଜ ॥ ହଁ, ବର୍ତ୍ତମାନ ସେସ୍ବା କହିବୁନି ଆଉ କ'ଣ ?

ସବିତା ॥ ଆଉ ବନ୍ଧାଛଟିକା କରୁଚ ?

ନଳ ॥ (ସ୍ମିତ ହସି ଓ ମୁଣ୍ଡ ହଲେଇ) ମୋଟେ ନାହିଁ— (ନିଳି ଟିକଏ ଅନ୍ୟମନସ୍କ ହୋଇଗଲା—ଡ଼ାକ୍ତର ପ୍ରବେଶ କରୁଥିଲାବେଳେ ।)

ମନୋଜ ॥ ବୁଝିଲ ସବିତା, ମୋର "ଏଣ୍ଡ୍ରୋକ୍ଲିସ୍ ଆଣ୍ଡ ଦି ଲାୟନ୍" ଗପଟା ମନେ ପଡ଼ୁଯାଉଚି ।

ନଳ ॥ (ମନୋଜ ଆଡ଼େ ଚାହିଁ) ଏଁ, କଣ କହିଲ ଗାଇ ?

ସବିତା ॥ (ହସି) ଆରେ କାହିଁକି ବସ୍ତୁବାକ ଏମିତି ଥଟ୍ଟା କରୁଚ କହିଲ—(ଦୁଆର ପାଖରେ ଡ଼ାକ୍ତରଙ୍କୁ ଦେଖି) ଅରେ ବସନ୍ତୁ—
ସେଠି ଠିଆ ହୋଇଛନ୍ତି କାହିଁକି ?—ଆମ କଥା ଶୁଣୁଥିଲେ ?

ରବି ॥ (ଭିତରକୁ ଆସି ଓ ଗୋଟାଏ ଚୌକିରେ ବସିପଡ଼ି) ହୁଁ—

ନଳ ॥ (ଟି'-ପଟରେ ହାତ ମାରି) ଗରମ ଅଛି ତ !

ମନୋଜ ॥ ରହିବନି ? ମୁଁ ତିଆରି କରିଚି ଟି'.....(ନଳ ସ୍ମିତ ହସି ସ୍ୱରଟା କପ୍‌ରେ ଟି' ତିଆରି କଲା—ସମସ୍ତେ କିଛି ସମୟ ନୀରବ ରହିଲେ— ନଳ ସମସ୍ତଙ୍କୁ ଟି' ଦେଲା ।)

ରବି ॥ (ଟି' ପିଉ ପିଉ) ଆଙ୍ଗୁଠି କମିତି ଲାଗୁଚ ?

ନଳ ॥ ଚନ ଠିକ୍ ହେଇଚି ?

ମନୋଜ ॥ ନଳର ମୁହଁରୁ ତୋର ସେକଥା ବୁଝିନେବା କଥା—ନଳ—ଆଉ ଗୁମଟେ ଚନ ଦେଲୁ—। ମିଠା ହେଇନି—

ରବି ॥ ମିଠା ହୋଇନି—ମତେ ତ ସରବତ ଭଳି ଲାଗୁଚ ।

ସବିତା || ଜଳେ—କଥା କଅଣ ?

ନଳ || କଥା ଫେର୍ ଆଉ କ'ଣ ? —ମୁଁ ତ ସବୁଥିରେ ଦ'ଦ' ଘୁମୁସ୍ତ କରି ଚାଲି ଦେଲି—ତୁ ଦେଖିଲୁ ତ—

ସବିତା || ଉଁହୁଁ ...ମନେହୁଏ (ରବିର କପ୍‌ଟା ଆଡ଼େ ହାତ ଦେଖାଇ) ସେ କପ୍‌ଟାରେ ବେଶି ଚାନ୍ଦ ପଡ଼ିଯାଇଛି—

ମନୋଜ || ରବି, ତୋର 'ଏଣ୍ଡ୍ରୋକ୍ଲସ୍ ଏବଂ ସିଂହ' ଗପଟା ମନେ ଅଛି ?

ନଳ || (ମନୋଜ କପ୍‌ରେ ଚାନ୍ଦ ଗୋଲେଇ ଗୋଲେଇ) ଭଲ, ସେମିତି ଯଦି ଫାଜିଲାମି ବାହାର କରିବ ନାଁ—

ରବି || ମନୁ, ମୁଁ ଯାଉଛି—ଘର ପାଖରେ ବହୁତ ରୋଗୀ ଅପେକ୍ଷା କରିଥିବେ ।

ନଳ || (ବେକ ଭାଙ୍ଗି ଡାକ୍ତର ମୁହଁକୁ ଚାହିଁ) ହଁ—କରନ୍ତୁ—ସବୁ ତ ମାଗଣା—

ରବି || (ହସି) ଆପଣ ଯେ ମୋତେ ଫିସ୍ ଦେବେ, ତା'ର ଆଶା ବି ତ ନାହିଁ—

ନଳ || (ରବି ମୁହଁକୁ ସ୍ନିଗ୍ଧ ଦୃଷ୍ଟିରେ ଚାହିଁ) ଏଇ ସାମାନ୍ୟ ଗୋଟାଏ ଘା ପାଇଁ କପେ ଚା'ର ଫିସ୍ ଯଥେଷ୍ଟ ନୁହେଁ ?

ମନୋଜ || ହଁ ହଁ, ଯଥେଷ୍ଟ···ଏହାଠୁ ବେଶି ଆଶା କରିବା ତୋ'ର ଭାରି ଅନ୍ୟାୟ ରବି—

ସବିତା || ବିଶେଷତଃ ବ୍ୟାଚେଲର ଲୋକ ।

ରବି || Whose needs are few and ambition nil—ନା କଅଣ ?

(ସମସ୍ତେ ହସି ଉଠିଲେ—ରବି ଉଠି ଠିଆ ହେଲା)

ଆଚ୍ଛା······

ନଳ || ଫେର୍ କେବେ ଆସିବେ ଡାକ୍ତର ବାବୁ ?

ରବି || ମୋର ଆସିବାକୁ ବେଳ ନାହିଁ, ମିସ୍ ଦାସ—

ମନୋଜ || ସତ କଥା—ରବିର ମୋଟେ ବେଳ ନାହିଁ—

ନଳ || ବେଠିଆଙ୍କର ବେଳ ଅଣ୍ଟିବ କୁଆଡ଼ୁ ?

ରବି || ଜାଣେନା ତ......

ନଳ || ମୋ ହାତର ଏଇ ପଟିଟା ତ ଫେରେ ଖୋଲା ହବ !

ରବି || କାଲି କି ଘା' ଶୁଖି ଯାଇଥିବ ।

ନଳ || ଆମେ କେହି ସେ ଘା'ରେ ହାତ ଦେବୁନି—କାଳେ କୁଆଡ଼ୁ ଇନ୍‌ଫେକ୍‌ସନ—ହବାଟା ମୁସ୍କିଲ୍···

ମନୋଜ ॥ ନଳିନ ମିଛ କହୁନ, ରବି—ତୋ' ହାତରେ ଇନ୍‌ଫେକ୍‌ସନ୍ ହବାର କୌଣସି ସମ୍ଭାବନା ନାହିଁ ।

ରବି ॥ ଆରେ ନା ନା, ସେସବୁ ବାଜେ କଥା । ଦ'ଚାରି ଦିନ ପରେ ପଟିଟା ଖୋଲି ଦେବେ । ଇନ୍‌ଫେକ୍‌ସନ୍‌ର ପ୍ରଶ୍ନ ଉଠୁନି—

ନଳିନ ॥ ଆପଣଙ୍କୁ କାଲି ସନ୍ଧ୍ୟାରେ ଏଠି ଟି' ନିମନ୍ତ୍ରଣ ରହିଲା ।

(ମନୋଜ ଓ ସବିତା ପରସ୍ପରକୁ କଣେଇ ଚାହିଁ ସ୍ମିତ ହସିଲେ)

ରବି ॥ ଟି' ଖାଇବାକୁ ଏତେ ବାଟ ଆସିବି ?

ନଳିନ ॥ ଓଃ ! ତେବେ ଥାଉ ।

ରବି ॥ ଆପଣ ବୁଝି ପାରିବେନି, ମିସ୍ ଦାସ—

ନଳିନ ॥ (ରୁଢ଼ ଗଳାରେ) ମୁଁ ବୁଝିଚି - ଆପଣ ବ୍ୟବସାୟୀ ଲୋକ, ବହୁତ କ୍ଷତି ହେବ ।

ମନୋଜ ॥ ଆରେ ବେଠି ବ୍ୟବସାୟରେ ଲାଭ କ୍ଷତି ଗୋଟାଏ କଥା ?

ସବିତା ॥ ଆପଣ ବଡ଼ ଶୁଷ୍କ ଲୋକ, ଡାକ୍ତର ବାବୁ...

ମନୋଜ ॥ ହଁ ତ—ବିଶେଷତଃ ଜଣେ ନାଗର ନିମନ୍ତ୍ରଣକୁ ।

ନଳିନ ॥ ଏ ଯୁଗର ଶ୍ରେଷ୍ଠ ସେ !

ରବି ॥ ଅଚ୍ଛା ଆସିବି...କିନ୍ତୁ—

ସବିତା ॥ ଫେର୍ ଗୋଟିଏ କିନ୍ତୁ ରହିଲା—

ରବି ॥ (ନଳିନଆଡ଼େ ଚାହିଁ) ମତେ ଟି' ଖାଇବାକୁ ଡ଼ାକି ମିସ୍ ଦାସ ବିପଦ ବରଣ କରୁଛନ୍ତି— (ନଳିନ ଭ୍ରୂକୁଞ୍ଚନ କରି ରବିକୁ ଚାହିଁଲା)

ମନୋଜ ॥ (ବିସ୍ମିତ ହୋଇ) ତା କିମିତି ସମ୍ଭବ ?

ରବି ॥ ମତେ ଟି' ଖାଇବାକୁ ଡ଼ାକିଲେ ମିସ୍ ଦାସଙ୍କ ରୁମାଲରେ ବହୁତ ସେଣ୍ଟ୍ ଢାଳିବାକୁ ପଡ଼ିବ ।

ସବିତା ॥ ଆମେ ତ କିଛି ବୁଝିପାରୁନୁ ?

ରବି ॥ ପଚାରନ୍ତୁ ମିସ୍ ଦାସଙ୍କୁ ।

ନଳିନ ॥ (ଭ୍ରୂଭଙ୍ଗୀ କରି ଚାହିଁ) ଆପଣ ମୋ'ଠୁ ଦୂରେଇ ବସିବେ ।

ରବି ॥ ତା' ଅପେକ୍ଷା ବରଂ ଟି' ଖାଇବାକୁ ନ ଡ଼ାକିଲେ ତ ଅଡ଼ୁଆ ତୁଟି ଯାନ୍ତା—

ନଳିନ ॥ (ଅପ୍ରସ୍ତୁତ ହୋଇ) ଦେଖନ୍ତୁ, ଆପଣ ମୋତେ ଜେର କରିବାକୁ ଆରମ୍ଭ କଲେଣି । ଝାଳଗନ୍ଧ ମୁଁ ସହ୍ୟ କରିପାରେ ନା; କିନ୍ତୁ ଆପଣଙ୍କୁ ସହ୍ୟ କରିପାରିବି ବୋଲି ଭାବୁଚି ।

ମନୋଜ ।। ହଁ, ତା ଆମ ନଳ ଖୁବ୍ ପାଗଳ — ସେମିତି ତୁ ରୋଗକୁ ଘୃଣା କରୁ, ଅଥଚ ରୋଗୀ ପ୍ରତି ତୋର ଭୀଷଣ ମାୟା ।

ରବି ।। (ହସି) ଆଚ୍ଛା, ନମସ୍କାର, ସବିତା ଦେବୀ — ନମସ୍କାର, ମିସ୍ ଦାସ — (ନଳ ଓ ସବିତା ପ୍ରତିନମସ୍କାର କଲେ)

ମନୋଜ ।। (ଉଠି) ଚାଲ୍ ଚାଲ୍ ମୁଁ ତତେ ଆଗେଇ ଦେଇ ଆସେ — ବାଡ଼ୁଅ-ଟୁଙ୍ଗୀର ସଭାପତି ତୁ, ମୁଁ ତ ଫେର୍ ତା'ର ଦନେ ସଭ୍ୟ ଥିଲି ।

ନଳ ।। ବର୍ତ୍ତମାନ ବାଡ଼ୁଅ-ଟୁଙ୍ଗୀରେ କେତେ ଜଣ ସଭ୍ୟ ଅଛନ୍ତି ଭାଇ ?

ମନୋଜ ।। ବର୍ତ୍ତମାନ ? ରବି ହିଁ ଏକମାତ୍ର ସଭ୍ୟ ।

ନଳ ।। ଆଉ ସେଇ ଏକମାତ୍ର ସଭ୍ୟଙ୍କ ଉପରେ ସିଏ ସଭାପତି ?

ମନୋଜ ।। (ମନଖୋଲା ହସ ହସି) ହଁ ହଁ, ନଳ ତୁ ଠିକ୍ କହୁଚୁ... ଆରେ ରବି, ଆମର ନକେଇ ତ ଏକୁଟିଆ ଗୋଟାଏ ଅନୁଷ୍ଠାନ, ଚାଲ୍ ରବି ଚାଲ୍ ।

(ଉଭୟଙ୍କର ପ୍ରସ୍ଥାନ)

ନଳ ।। (ମୁଗ୍ଧ-ପ୍ରଶଂସ ଦୃଷ୍ଟିରେ ସେଇଆଡ଼େ ଚାହିଁରହି) ନୂଆବୋଉ, ଲୋକଟା ବାସ୍ତବିକ ବ୍ୟାଚେଲର ରହିବାର ଯୋଗ୍ୟ—

(ସବିତା ପ୍ରଶ୍ନସୂଚକ ଓ କୌତୂହଳ ଦୃଷ୍ଟିରେ ନଳକୁ ଚାହିଁଲା; ମଞ୍ଚ କ୍ରମେ ଅନ୍ଧାର ହୋଇଆସିଲା ।)



## ଦ୍ୱିତୀୟ ଦୃଶ୍ୟ

(ପୂର୍ବର ସେହି ଦୃଶ୍ୟ ଓ ସମସ୍ତ—ପୂର୍ବ ଘଟଣାର କିଛି ଦିନ ପରେ—ଘରର ଗୋଟିଏ କୋଣକୁ ଥିବା ରେଡ଼ିଓରୁ ବି. ବି. ସି. ଖବର ଆସୁଚି—କିନ୍ତୁ ଘରେ କେହି ନାହାନ୍ତି, ବୁଢ଼ା ଚାକର ନଧିଆର ପ୍ରବେଶ)

ନଧିଆ ।। ଦେଖ, ଘରେ କେହି ନାହାନ୍ତି—ରେଡ଼ିଓଟା ବାଜୁଚି—ପଇସାକୁ କାହାର ହେଲେ ଖାତର ଅଛି—ଉପରକୁ କେହି ନ ଥିଲେ, ଯାହା ହୁଏ—(ରେଡ଼ିଓଟା ପାଖକୁ ଯାଇ ଓ କଇଁପଡ଼ି)କେମିତି ଏବେ ଏଇଟା! ବନ୍ଦ ହେବ ମୁଁ କ'ଣ ହେଲେ ଜାଣିଚି ?

(ନଳ ଭିତରପଟ ଦୁଆରୁ ପ୍ରବେଶ କରି ନଧିଆର ସ୍ୱଗତୋକ୍ତି ଶୁଣିବା ପାଇଁ ଠିଆ ହେଲ)

ଏ ଝିଅଟା ଆସି ଅଧାବୁଢ଼ୀ ହେଲଣି—ଟିକିଏ ବାଗଯାଗ ଅଛି ହେଲେ—ବାହା'ସା ହଉନ କି କିଛି କରୁନ—

ନଳ ।। (ଧୀରେ ଧୀରେ ଘରେ ପ୍ରବେଶ କରି) ନଧିଆ, ଗୋଟାଏ ଭଲ ପାତ୍ର ଖୋଜି ଦେଲୁ କେଉଁଠୁ ?

ନଧିଆ ।। (ସଲଖି ଠିଆ ହୋଇ ଓ ନଳ ମୁହଁକୁ ଚାହିଁ) କାହିଁକି ?

ନଳ ।। (ଚୌକିରେ ବସିପଡ଼ି) ମୁଁ ଏ ଘରେ ଥାଇ ତୋ'ର ଭାରି ଅଡ଼ୁଆ କରୁଚି ।

ନଧିଆ ।। (ମୁହଁରେ ଗୋଟିଏ ଅସନ୍ତୋଷର ଭାବ ପ୍ରକାଶ କରି) ମୋର କାହିଁକି ତେମେ ଅଡ଼ୁଆ କରିବ ହୋ । ତମକୁ ଯଦି ଖରାପ ଲାଗୁନ, ତେବେ ବୁଢ଼ୀ ହେଲଯାଏଁ ଅଭିଆଡ଼ୀ ରହୁ ନ ?

ନଳ ।। (ଫିକ୍ କରି ହସି ପକାଇ) ସେଇଠୁ ?—ବୁଢ଼ୀ ହେଲ ପରେ ବାହା ହେବୁ ତ !

ନିଧିଆ ।। ହୁଃ, ବୁଢ଼ୀ ହେଇନ, ନାକ । ତଥ ସେ ରେଡ଼ିଓଟା ବନ୍ଦ ଭଲ ଦବଟି— ଘରେ ତ କେହି ନାହିଁ—ସେଇଟା କାହିଁକି ଘଁ ଘଁ ହଉଚ ।

ନଲ ।। ନାଇଁ ଆଉ—ଆଚ୍ଛା, ତୁ ସବୁଦିନେ ଏମିତ ଚଢ଼ ଚଢ଼ ହଉଚୁ କାହିଁକ ?

ନିଧିଆ ।। ହେବନ ? ତ'ଦନ ତଳେ ସେ ଡ଼ାକତରଟାକୁ ସୁ' ଖାଇବାକୁ ତାକ ମୁଡ଼େ ପଇସା ଢାଳଦେଲ— ଆଙ୍ଗୁଠିରେ କଅଣ ଟିକଏ କଣନଖା ହୋଇଥିଲ—ଧାନ ଗୋଟାଢରେ ଫୋଡ଼ ଦେଇଥିଲେ ପୁଳ ବାହାର ଯାଇ ନ ଥାନ୍ତା ?

ନଲ ।। ଆରେ ! ଏତେ ସହଜ ଉପାୟ ଥିଲ—ତୁ କହିଲୁନ ମତେ ?

ନିଧିଆ ।। ଓଃ —ତେମେ ତ ମୋ କଥା ନଇଲେ ଶୁଣି ପକେଇ ଥା'ନ୍ତ—ସହର ବଜାର ଲୋକଙ୍କର ଢଲକୁ ତାଲ କରବା ପ୍ରକୃତ—

ନଲ ।। ଡ଼ାକ୍ତର ବାବୁ ପର ଭାଇଙ୍କ ସାଙ୍ଗ—

ନିଧିଆ ।। ହୁଃ—ସାଙ୍ଗ – ଖାଲ ଖାଇବା ସାଙ୍ଗ—ଭାଇନ ଭାଇ, ଭଉଣୀନ ଭଉଣୀ—ପଇସାବୁର ନଷ୍ଟ କରବାରେ ଲଗିଚ ଖାଲ—

ନଲ ।। ହଉ, ବାବୁ – ତୁ ଗଲୁ ଏଠ...

ନିଧିଆ ।। ଯାଉଚରେ, ବାବୁ – ମୋ କଥାଟୁକୁ ତ ବସୁଲ ନାହୁଥବ – (ଦୁଆର ମୁହଁରେ ରବ ଡାକ୍ତରକୁ ଦେଖି ମୁହଁରେ ଅସନ୍ତୋଷ ଭାବ ପ୍ରକାଶ କର)
ହେଇଟି ଆଇଲେଣି –
(ନଲ ଚମକ ଡ଼ାକ୍ତର ଆଡ଼େ ଚାହିଁଲ...ବସ୍ମୟ ଓ ଅନନ୍ଦରେ ଉଠିପଡ଼ିଲ)

ନଲ ।। ଆପଣ ଡ଼ାକ୍ତର ବାବୁ –

ନିଧିଆ ।। ହୁଁଃ – ସେଇଥିପେଇଁ ମତେ ଏଠୁ ତଡ଼ା ହଉଥିଲ···

(ଗୁଜ୍‌ର ମୁଜ୍‌ର ହୋଇ ପ୍ରସ୍ଥାନ)

ରବ ।। ନମସ୍କାର –

ନଲ ।। ନମସ୍କାର···ଆରେ, ସେଠି ଠିଆହୋଇ ରହିଲେ କାହିଁକ ? ଆସନ୍ତୁ ଭିତରକୁ ।

ରବ ।। (ଇତସ୍ତତଃ କର) ଇଏ...ମନୁ···ମନୁ···ଅଛୁ ନା ?

ନଲ ।। ଭାଇ ବା ନୂଆବୋଉ କେହି ନାହାନ୍ତି – ବୁଲଯାଇଛନ୍ତି –

ରବ ।। ଓଃ ! ତେବେ ତ······

ନଳ || କ ମୁସ୍କିଲ୍ !—ଭିତରକୁ ଆସି କଥା ହେଲେ କ'ଣ ପାପ ଲାଗି ଯାଉଚି ? ଭାଇ ନାହାନ୍ତି ବୋଲି କଥଣ ଏ ଘରେ ଆଉ କେହି ନାହାନ୍ତି ?

ରବି || ନାଇଁ ତା ନୁହେଁ ଯେ—(ଇତସ୍ତତଃ ଭାବରେ ଭିତରକୁ ପ୍ରବେଶ କରି) ମୁଁ ଯାଙ୍କେ ଯାଙ୍କେ ଚାଲିଯିବି—

ନଳ || (ହସି) ଯିବେ ତ ଯିବେ···ଏତେ explanation ଦେଉଛନ୍ତି କାହିଁକି ?—ଭାଇଙ୍କ ପାଖରେ ତ'ଙ୍କ କାମ ଥିଲା ?

ରବି || ହଁ···ସେମିତି ବିଶେଷ କିଛି ଜରୁରୀ ନୁହେଁ···ଏଇ ମାନେ ।

ନଳ || ମୋତେ କହିବାକୁ ଆପତ୍ତି ଅଛି ?

ରବି || ନାଇଁ, ଆପତ୍ତି ଆଉ କଥଣ ? ସେମିତି କିଛି କାମ ନୁହେଁ— ଯାଉଥିଲି, ଏ ବାଟେ ରୋଗୀ ଦେଖି...ଅଟକି ଗଲି—କହିବା କିଛିଚାରି ଏଆଡ଼େ ଅସେ କନା—

ନଳ || (ସ୍ମିତ-କଟାକ୍ଷ କରି) ବୁଝିଲି—ରୋଗୀ ଦେଖା ଯାଙ୍କେ ଯାଙ୍କେ ବନ୍ଧୁ ଶଙ୍ଖୋଳାଟା ବି ଯାରଦେଇ ଯିବାକୁ ଚେଷ୍ଟା କରୁଁଲେ—ହଉ, ବସନ୍ତୁ— (ସାମାନ୍ୟ ଅପେକ୍ଷା କରି) କଥଣ ? ଟିକିଏ ବସିଗଲେ ରୋଗୀ ଦେଖାରେ ଡ଼େରି ହୋଇଯିବ ?

ରବି || ନାଇଁ ଯେ···ଆଚ୍ଛା, ବସୁଚି —(ବସିବା) .

ନଳ || କାହା ଘରକୁ ରୋଗୀ ଦେଖି ବାହାରିଛନ୍ତି ?

ରବି || ଏଁ ? କାହା ଘରକୁ ?—ଏଇ, ଏଇଠି, ପାଖରେ ।

ନଳ || ତାଙ୍କ ନାଁ କହନ୍ତୁ ତ—ଏଇଠି ପାଖରେ ଯଦି ମୁଁ ହୁଏ ତ ଜାଣିଥିବି—

ରବି || (ବିବ୍ରତ ହୋଇ) ନାଁ ? ନାଁଟା କଥଣ ତ···

ନଳ || ମନେ ପଡ଼ୁନି...(ବଙ୍କେଇ ହସି) ତାଙ୍କ ଘରଟା ଦେଖିଛନ୍ତି ତ ?

ରବି || ନା, ଦେଖିନି—

ନଳ || (ବିସ୍ମିତ ଭାବ ଦେଖେଇ) ଆଶ୍ଚର୍ଯ୍ୟ ! ନାଁ ଜାଣନ୍ତିନି—ଘର ବି ଦେଖି ନାହାନ୍ତି—ଆଚ୍ଛା, ଆପଣଙ୍କ ସାଥିରେ ରୋଗୀର କେହି ଆତ୍ମୀୟ ଅଛନ୍ତି ?

ରବି || ଊହୁଁ···ଛାଡ଼ନ୍ତୁ ସେକଥା—ମୁଁ ରୋଗୀ ଦେଖିବାକୁ ବାହାରିଚି—କିନ୍ତୁ କୋଉ ରୋଗୀ ମୁଁ କହି ପାରିବିନି—

ନଳ || (ବକ୍ର କଟାକ୍ଷ କରି) ବୁଝିଲି—ଆପଣ ମୋତେ ରୋଗୀ ଦେଖି ବାହାରି ନ ଥିଲେ··· ଚୁପ୍ ହୋଇ ଏଇଠି ବସନ୍ତୁ, ଭାଇ ନୂଆଡୋଉ ଫେରିଲି ଯାଏ ।

ରବି || ନା ନା......ମୁଁ ବେଶି ସମୟ ରହି ପାରିବିନି······

ନଲି || ପାରିବେ—ଆପଣଙ୍କର ଆଜି ସନ୍ଧ୍ୟାରେ କିଛି କାମ ନାହିଁ—

ରବି || କିଏ କହିଲା ? ମିଛ କଥା......

ନଲି || ଆଚ୍ଛା, ଏମିତି ବିବ୍ରତ ହୋଇପଡ଼ୁଛନ୍ତି କାହିଁକି—ମୁଁ ଜାଣେ ଆପଣ ରୋଗୀ ଦେଖିବାକୁ କମା ବାହାର ନଥିଲେ···

ରବି || ଆଉ ତେବେ କୁଆଡ଼େ ବାହାରିଥିଲି ?

ନଲି || (ସ୍ମିତ କଟାକ୍ଷ କରି) ଆରେ ମୁଁ କିମିତି ଜାଣିବି ?

(ଦୁହେଁ କିଛି ସମୟ ନୀରବ ରହିଲା ପରେ)

ରବି || କଅଣ ଚୁପ୍ ରହିଲେ ଯେ···

ନଲି || ଆମେରିକା, ବିଲାତ ପରି ଯାଇଥିଲେ ଆପଣ ? ସେଠି ଲୋକମାନେ ଇମିତି ମିଛ କହନ୍ତି ?

ରବି || ମାନେ ? ମୁଁ କଅଣ ମିଛ କହିଲି ?

ନଲି || ସତ କହିଲେ ବୋଲି·ତ ମନେ ହଉନି—
ମୋର ଧାରଣା ଥିଲା, ଯେଉଁମାନେ ଆମ ଭାରତର ଏଇ ସଂକୀର୍ଣ୍ଣ ଗଣ୍ଡିରେ ମିଛ କହିବାରେ ଅଭ୍ୟସ୍ତ; ସେମାନେ ଆମେରିକା, ବିଲାତର ସ୍ୱାଧୀନ ସମାଜରେ କିଛିଦିନ ଚଳାଅଭିଲା ପରେ, ଅନ୍ତତଃ ଛୋଟ ଛୋଟ କଥାରେ ମିଛ କହିବାର ଅଭ୍ୟାସଟା ଛାଡ଼ିଦେଇ ଆସିଥାନ୍ତି ।

ରବି || ଏକଥା କହିବାର ଅର୍ଥ, ମିସ୍ ଦାସ ?

ନଲି || କହିବାର ଅର୍ଥ ହଉଚି—ଆପଣ ଏଇଠିକି ଆସିଛନ୍ତି, ଅଥଚ—

ରବି || (ଜବରଦସ୍ତି ହସି) ମୋଟେ ନୁହେଁ, ମିସ୍ ଦାସ—ସତକଥା ହଉଚି, ଆପଣଙ୍କର ଅନୁମାନ ମୋଟେ ଠିକ୍ ନୁହେଁ—ମୁଁ ଏମିତି ନିରୁଦ୍ଦେଶ୍ୟ ଭାବରେ କାରଟା ଧରି ବୁଲୁ ବୁଲୁ—

ନଲି || ଏଠି ହାବୁଡ଼ି ଗଲେ—ଏୟା ତ ?...ତା'ହେଲେ ରୋଗୀ ଦେଖିଯିବା କଥାଟା ମିଛ—

ରବି || (ସାମାନ୍ୟ ଆହତ ସ୍ୱରରେ) ଏଇ ସାମାନ୍ୟ କଥା ଉପରେ ଏତେ ଜେରା କରିବା କି ଦରକାର ?

ନଲି || (ଗମ୍ଭୀର ହୋଇ) ମୁଁ ଦୁଃଖିତ......(ଉଠି) ହଉ, ଟିକିଏ ବସନ୍ତୁ—
କପେ ଚା' ଅନ୍ତତଃ— !

ରବି || ନା ନା—ଚା' ଦରକାର ନାହିଁ । (ଘଡ଼ି ଦେଖି) ମୁଁ ଆଉ ବେଶି ସମୟ—

ନଳ || ଓଃ—କଏ ଆପଣଙ୍କ ଭଳି ବୁଢ଼ା ବ୍ୟାଚେଲରଙ୍କୁ ବେଶି ସମସ୍ତ ବା ବସେଇବାକୁ ସାହସ କରିବ, କହନ୍ତୁ ତ ?

ରବ || (ନଳ ମୁହଁକୁ ପ୍ରଶ୍ନସୂଚକ ଭଙ୍ଗୀରେ ଚାହିଁ ଓ ପରେ ସାମାନ୍ୟ ହସି) ଠିକ୍ କଥାତ—ମୁଁ ବ ଠିକ୍ ସେଇ କାରଣରୁ ଶୀଘ୍ର ଉଠିବାକୁ ଚାହେଁ ।

ନଳ || (ରବର ଜାମାକୁ ଚାହିଁ) ଇସ୍ ! ଜାମାଟା ଝାଳରେ ଓଦା ଜୁଡ଼୍ ଜୁଡ଼୍ ।

ରବ || ସେଇଟା କ'ଣ ଆଜି ନୂଆ ଦେଖିଲେ ? ସ୍ୱା ପୂର୍ବରୁ ତ 'ଢ'ଢ' ଅର ଦେଖିଲେଣି ।

ନଳ || (ପାଖେଇ ଆସି) ଆପଣ ବାସ୍ତବିକ୍ ଗୋଟାଏ ଗୁହା-ମାନବ । ଖୋଲନ୍ତୁ, ଖୋଲନ୍ତୁ ଆପଣଙ୍କର ସେ ଜାମାଟା—ଶୀତଦିନ—ଥଣ୍ଡା ଲାଗିବା ଅସମ୍ଭବ ନୁହେଁ ।

ରବ || କେବେ ତ ଲାଗି ନ—ଲାଗିଲେ ବ ମୁଁ ତ ଡାକ୍ତର ।

ନଳ || ବେଠିଆ ଡ଼ାକ୍ତରମାନଙ୍କର ନିଜକଥା ବୁଝିବାକୁ ବେଳ ନ ଥାଏ—ଖୋଲନ୍ତୁନା ନା, ସେ ଝାଳୁଆ ଜାମାଟା ।

ରବ || (ବ୍ୟସ୍ତଭାବରେ) ତା' କେମିତି ହବ, ମିସ୍ ଦାସ ।

ନଳ || ଧେତ୍—ଖୋଲନ୍ତୁ ନା ।

ରବ || ମୋର ଖୋଲା ଗୁଡ ଆଉ ହାତ ଦେଖିଲେ, ଆପଣ ହୁଏତ—

ନଳ || ନା ଫେଣ୍ଟ କରିବନି ।

ରବ || (ଆପତ୍ତି ଭଙ୍ଗୀରେ) ମୁଁ ଯେ ଗୋଟାଏ ଲେମଣ ଜନ୍ତୁ, ମିସ୍ ଦାସ ।

ନଳ || ସେଇଟା ମୁଁ ପ୍ରଥମ ଦିନୁ ଲକ୍ଷ୍ୟ କରିଚ—ଛାଡ଼ନ୍ତୁ ସେ ଜାମାଟା—ମୁଁ ଭାଇଙ୍କର ଗୋଟାଏ ଜାମା ଆଣି ଦଉଚ—(ପାଛିକରି) ମୋଡ ମା'··· ଆଲେ, ଏ ମୋଡ ମା'—

(ରବ ପ୍ରଶ୍ନ ସୂଚକ ଅଖିରେ ନଳ ଆଡ଼େ ଚାହିଁ ଅତି କୁଣ୍ଠିତ ଚତ୍ତରେ ଜାମାଟା ଖୋଲିବାକୁ ଆରମ୍ଭ କଲ, ବିସ୍ମୟ-ବିସ୍ଫାରିତ ଆଖିର ରବର ଲେମଣ ଗୁଡ ଓ ହାତକୁ ନଳ ଅଳ୍ପ କେତେକ ସମସ୍ତ ପାଇଁ ଚାହିଁ ରହିଲ—ରବ ଜାମାଟା ଖୋଲିସାରି କେଉଁଠି ସେଟା ରଖିବ, ଭାବୁଥିଲ ଘରର ଚାରିଆଡ଼େ ଚାହିଁ—ନଳ ରବ ହାତର ଜାମାଟା ଛଡ଼େଇ ନେଲ ।)

ରବ || ଆରେ ! ଏ କ'ଣ କଲେ— ସେ ଝାଳୁଆ ଜାମାଟା ଆପଣ ଧଇଲେ କାହିଁକି ? ଇସ୍......ଦଅନ୍ତୁ ଦଅନ୍ତୁ, ଆପଣ ବଡ଼ ଅଦ୍ଭୁତ ଲୋକ ମିସ୍ ଦାସ ।

ନଳ ।। (ଜାମାରୁ ବୋତାମ କାଢ଼ି କାଢ଼ି) ଆପଣ ଚୁପ୍ ହୋଇ ବସନ୍ତୁ ତ...

ରବି ।। କ'ଣ ଯେ ଆପଣ କହୁଛନ୍ତି, ମୁଁ କିଛି ବୁଝିପାରୁନି ।

ନଳ ।। କିଛି ବୁଝିବା ଦରକାର ନାହିଁ ..

(ମୋଟା ମା'ର ପ୍ରବେଶ ବକର ବକର ହେଇ)

ମୋଟା ମା' ।। ଏମିତି କଳକଳା ଗପ କଥା ଗୁଡ଼ାକ କଓ ଦେଉ ?

(ରବିକୁ ଦେଖି ଚମକି ପଡ଼ିଲେ ଏବଂ ଓଢ଼ଣା ଟାଣିଦେଇ ରବିର ଦେହକୁ ବିସ୍ଫାରିତ ନେତ୍ରରେ ଚାହିଁଲେ ।)

ନଳ ।। ଏମିତି କାଲେଜୀ ସାଜି ଆସିଛୁ କାହିଁକି ?

ମୋଟା ମା' ।। କାହିଁ ସାଜିବି କି ? ସେ ବାଡ଼ିପୋଡ଼ା ଖାଲପିଠିଆ ବୁଢ଼ା ତ କବାଟକୁ ଧରି ଠିଆରେ ଠିଆରେ ଘୁମେଉଚି—ଏ ଘରର ପାଇଟି କରି କରି ମୋ' ଠେଙ୍ଗ ଛୁଡ଼ିଗଲାଣି—ମୁଁ ଆଉ ତମ ଘର ପାଇଟିକୁ ପାରିବିନି ଲୋ ମା—ବୁଢ଼ା ପେନସନ ପାଉଥାଉ, ମୁଁ ଏଣେ ଖଟି ଖଟି ମରୁଥେଁ ।

ନଳ ।। ହଉ—ଡାକିଲମାନେ ଆରମ୍ଭ ହୋଇଗଲା, ନଧିଆର ନନା—

ମୋଟା ମା' ।। ମ—କଅଣ ମିଛ କହିଲି କି ? କହୁଚି, କାହିଁ ଡାକୁଥିଲ—

ନଳ ।। ଯା' ତ—ନାଇଁ ତୁ ପାରିବୁନି—ନଧିଆକୁ ଡାକଦେ, ନାଇଁ, ଶୁଣୁ—ନଧିଆକୁ କହିବୁ, ଭାଇଙ୍କ ଖୋଲା ଟ୍ରଙ୍କରୁ ଗୋଟେ ଜାମା ଆଣିବ—ମନେ ରହିଲା ?

ମୋଟା ମା' ।। ହଁ ହଁ, ମନେ ରହିଲା—ଯାଉଚି କହିଦେବି—(ଯିବା ପୂର୍ବରୁ ପୁଣି ଥରେ ରବିର ଗୁଡ଼ିକୁ ଚାହିଁ ଚାହିଁ ପ୍ରସ୍ଥାନ କଲେ ।)

ନଳ ।। (ଜାମାଟା କାନ୍ଧ ଉପରେ ପକାଇ ବୋତାମଗୁଡ଼ା ରବି ହାତକୁ ବଢ଼ାଇ)
ଧରନ୍ତୁ—ମୁଁ ନିଜେ ଯାଏଁ—ସେଗୁଡ଼ କେହି ପାରିବେନି—ଏଇଲେ ଥେଣ୍ଟିଆ ଥେଣ୍ଟି ହେବେ......

ରବି ।। (ଅତି ବ୍ୟଗ୍ରଭାବରେ ଦେଖାଇ) ଆଃ, କାନ୍ଧରେ ପୁଣି ସେଇଟା କାହିଁକି ରଖିଲେ—ଝାଳଗନ୍ଧ ହଉନି ?

ନଳ ।। (ବେଙ୍କ ଭଙ୍ଗି ଓ କଟାକ୍ଷ କରି) ଇ···ଇସ୍—ଗନ୍ଧ ହଉନି ଫେର ! ମୋର ବାନ୍ତିର ଉପକ୍ରମ ହେଲାଣି ପଛେ ।

ରବି ।। (ଅସନ୍ତୋଷ ଭାବ ପ୍ରକାଶ କରି) ମୁଁ ତ ଠିକ୍ ସେୟା କହୁଚି—(ହାତ ବଢ଼େଇ) ଦିଅନ୍ତୁ ସେ ଜାମାଟା ଇସ୍ତାଡ଼ିକ—

ନଳ ।। ନା—

ରବି ॥ (ବିସ୍ମିତ ହୋଇ) ନା ? ମୋ ଜାମାଟା, ମଇଳା ହେବନି ?

ନୀଲି ॥ ହେବନି, କ'ଣ କରିବେ ?

ରବି ॥ (ହତାଶଭାବ ଦେଖାଇ) ନାଃ, ଆଉ କରିବି କଅଣ ? ଆପଣମାନଙ୍କ ଭଳି ଜଣେ ଜଣେ ମହିଳାଙ୍କ ହାବୁଡ଼େ ପଡ଼ିଲେ······

ନୀଲି ॥ (କୌତୂହଳ ପ୍ରକାଶ କରି) କ'ଣ ହୁଏ......

ରବି ॥ ନାହିଁ, କିଛି ନାହିଁ—ଦୟାକରି ନାକ ପାଖରେ ସେଣ୍ଟଲଗା ରୁମାଲଟା ରଖନ୍ତୁ—

ନୀଲି ॥ ଏତେ ସେଣ୍ଟ୍ ଖର୍ଚ୍ଚ କରିବାକୁ ପଇସା ନାହିଁ—

ରବି ॥ (ବିକଳ ଭାବ ଦେଖାଇ) ଦେଖନ୍ତୁ ମିସ୍ ଦାସ—ଏତେ ଜିଦ୍ ଧରନ୍ତୁନି । ଆଚ୍ଛା, ମତେ ଏତେ ଅସ୍ୱସ୍ତିକର ପରିସ୍ଥିତି ଭିତରେ କାହିଁକି ପକେଇଛନ୍ତି କହିଲେ—ତେବେ ଦୟାକରି ସେଇ ଚୌକି ବାଡ଼ାରେ ଜାମାଟା ରଖିଦିଅନ୍ତୁ— ଛି···ଛି···ଛି···

ନୀଲି ॥ ଆପଣଙ୍କର ଜିଦ୍ ବି ତ କମ ନୁହେଁ... (ରବି ନୀଲି ମୁହଁକୁ କିଛି ସମୟ ଚାହିଁଲା...ସେମେ ତା'ର ଆଖିରେ ଦେଖାଗଲା ଗୋଟାଏ ଚରମ ମୁଗ୍ଧ ଭାବ...ନୀଲି ମଧ୍ୟ ରବିକୁ ଚାହିଁଲା—କିନ୍ତୁ ରବିର ସ୍ଥିରଦୃଷ୍ଟିରେ ସେ ଗୋଟାଏ ଅସ୍ୱାଚ୍ଛନ୍ଦ୍ୟ ଭାବ ଅନୁଭବ କରି ବାରମ୍ବାର ଆଖି ଫେରାଇ ନେଲା । ଶେଷକୁ ଆଉ ଚୁପ୍ ରହି ନପାରି) ଅରେ ! ଏମିତି ଚାହିଁଛନ୍ତି କାହିଁକି ?

ରବି ॥ ମୁଁ ଦେଖୁଚି, ମିସ୍ ଦାସ...ଆପଣଙ୍କର ସେଇ ସୁନ୍ଦର ସୁରଭିତ ତନୁ-ବଲ୍ଲରୀରେ ମୋର ସେଇ ଝାଳୁଆ ଜାମାଟା ଠିକ୍ ମାନୁଚି କି ନାହିଁ—

ନୀଲି ॥ (ଚମକି ପଡ଼ି ରବିଆଡ଼େ ଚାହିଁ) ଆପଣ ଜଣେ ସାହିତ୍ୟିକ ମଧ୍ୟ ?

ରବି ॥ ମୋଟେ ନୁହେଁ, କିନ୍ତୁ ଓଡ଼ିଆ ତ ମୋର ମାତୃଭାଷା ? ସାହିତ୍ୟିକ ନ ହେଲେ ମଧ୍ୟ ସୁନ୍ଦର ଭାଷା ପ୍ରୟୋଗର ଶକ୍ତିଟା କିଛିତ୍ ପରିମାଣରେ ଅଛି—

ନୀଲି ॥ କିଛିତ୍ କାହିଁକି—ଖୁବ୍ ଭଲ ପରିମାଣରେ ଅଛି । ଶୁଣନ୍ତୁ, ଆପଣ ଏ ବେଠି ଡାକ୍ତରୀ ଛାଡ଼ି ବରଂ ସାହିତ୍ୟଚର୍ଚ୍ଚା କରନ୍ତୁ—

ରବି ॥ ନାଃ—ସାହିତ୍ୟଚର୍ଚ୍ଚା ଅନେକ ସମୟରେ ଜୀବନର ଲକ୍ଷ୍ୟ ପଥରେ ଗୋଟାଏ ବଡ଼ ଅନ୍ତରାୟ ।

ନୀଲି ॥ (ରବି ମୁହଁରେ କଅଣ ଯେପରି ଖୋଜିଲା ଭାବ ଦେଖାଇ) ହୁଁ—ଅନ୍ତରାୟ—ବ୍ୟାଚେଲର ରହିବା ଲକ୍ଷ୍ୟ ପଥରେ ।

ରବି ॥ (ମୃଦୁ ହସି) ଆପଣ ତ ବେଶ୍ ବୁଦ୍ଧିମତୀ—

ନଳ ।। (ଖିଲ୍ ଖିଲ୍ ହସିଲା—ରବି ବିସ୍ମିତ ହୋଇ ଚାହିଁଲା—ହସ ବନ୍ଦ ହେଲା ପରେ) ସେ ବିଷୟରେ ଆପଣଙ୍କର ସନ୍ଦେହ ଥିଲା ନା କଅଣ ?

(ନଧିଆ ଜାମା ଧରି ପ୍ରବେଶ କଲା ହାଇ ମାରି ମାରି)

ନଧିଆ ।। ନଅ—ବାବୁଙ୍କ ଜାମା କିଏ ପିନ୍ଧିବ ?

ନଳ ।। (ଜାମାଟା ନେଇ ରବିର ହାତକୁ ବଢ଼ାଇଦେଇ) ପିନ୍ଧନ୍ତି ।

ନଧିଆ ରବିର ଲେମଣ ଦେହକୁ କିଛି ସମୟ ବିରକ୍ତିରେ ଚାହିଁଲା—ତା'ପରେ ନଳର କାନ୍ଧରେ ଝୁଲୁଥିବା ଜାମାଟାକୁ ଦେଖିଲା—ଏକ ବିରକ୍ତିସୂଚକ ସ୍ୱରରେ)

ନଧିଆ ।। ବାବୁଙ୍କ ଜାମା କଅଣ ତାଙ୍କ ଧିଅଙ୍କୁ ହେବଯେ, ପିନ୍ଧିବାକୁ କହୁଚ ?

ନଳ ।। (ନଧିଆର କହିବାର ତାତ୍ପର୍ଯ୍ୟ ବୁଝିପାରି) ସେ କଥା ମୁଁ ବୁଝିବି—(ନଧିଆ କିଛି ନ କହି ମୁହଁରେ ଗୋଟାଏ ବିକୃତ ଆଣି ରବିକୁ ଚାହିଁଲା)

ରବି ।। କିନ୍ତୁ ଏ ଜାମାଟା ବି ଘଣ୍ଟାକ ଭିତରେ ଭିଜିଯିବ —

ନଳ ।। ଭିଜୁ—

ରବି ।। (ଜାମାଟା ପିନ୍ଧିଲା) ହେଃ—ଆପଣ ମତେ ଆଜି ଗୋଟାଏ କିମ୍ଭୂତ-କିମାକାର ପରିସ୍ଥିତିରେ ପକେଇଲେ—ମତେ ମୋଟେ ଭଲ ଲାଗୁନି—

ନଳ ।। ମୁଁ ଜାଣେ—

ରବି ।। ଆମଭଳି ଲୋକ ଏ ପରିସ୍ଥିତିରେ ପଡ଼ିଲେ ଖାପଛଡ଼ା ବୋଧ କରିବା ସ୍ୱାଭାବିକ !

ନଳ ।। ହଁ—ନାସ୍ତି ସାନ୍ନିଧ୍ୟରୁ ଦୂରେଇ ରହିଲେ ଠିକ୍ ଏଇ ପରିସ୍ଥିତି ଉପୁଜେ—(ନଧିଆକୁ ଛିଡ଼ା ହୋଇଥିବାର ଦେଖି) କିରେ, ଛିଡାହୋଇ ରହିଲୁ କାହିଁକି ?

ନଧିଆ ।। (ବିରକ୍ତି ଭାବ ଦେଖାଇ ମନକୁ ମନ) ହୁଁଃ—ଗୋଟାଏ ପାଳି ଲାଗିଚି ଏଠି ! (ପ୍ରସ୍ଥାନ)

ନଳ ।। ବଡ଼ ଖେଟେଖେଟିଆ ବୁଢ଼ାଟାଏ ।

ରବି ।। ମୋର ଏଠିକି ଆସିବା ସେ ହୁଏତ ପସନ୍ଦ କରୁନି—

ନଳ ।। ନ କରୁ—ଆପଣ ସେଥିପାଇଁ ବ୍ୟସ୍ତ ହେବେନି ।

ରବି ।। ନା ନା, ମୁଁ ମୋଟେ ବ୍ୟସ୍ତ ନୁହେଁ—। ହଉ, ସେ ପତ୍ରାବଟାକୁ ଖଣ୍ଡେ କାଗଜରେ ଗୁଡ଼ାଇ ମୋତେ ଦିଅନ୍ତୁ—ଆଉ ପାଣିରେ ହାତ ଧୁଅନ୍ତୁ ଯାଇଁ ।

ନଳ ॥ (ଧମକେଇ) ଓଃ—ସେ ଗୋଟାଏ କଥାକୁ ଘୁଡ଼େଇ ଚୁଡେଇ କହି ଚାଲିଛନ୍ତି—ଭଲ ଲାଗୁନି—ଦୟାକରି ଅନ୍ୟ କଥା ପକାନ୍ତୁ—

ରବି ॥ ନା - ଆପଣ ସେ ପ୍ରସ୍ତାବଟା ଦେଲେ ଯାଇ ଅନ୍ୟ କଥା—

ନଳ ॥ ଓଃ, ଭାରି ତ ଗୋଟାଏ ଜାମା - ନେଉନାହାନ୍ତି ?

ରବି ॥ ହଁ ଦିଅନ୍ତୁ—

ନଳ ॥ ଦେବିନି—

ରବି ॥ ପ୍ରଥମ ଦିନ ଆପଣଙ୍କର ଝାଲ ପ୍ରତି ଯେଉଁ ପ୍ରତିହିଂସା ଦେଖା ଦେଇଥିଲା, ଆଜି ତା କୁଆଡେ଼ ଗଲା ?

ନଳ ॥ ଠିକ୍ ସେମିତି ଅଛି ।

ରବି ॥ (ଦୃଢ଼ ଗଳାରେ) ତା' ହେଲେ ଜାମାଟା ଦେଉନାହାନ୍ତି କାହିଁକି ?

ନଳ ॥ (ଚିଡ଼ିଯାଇ ଜାମାଟା ଚୌକି ଉପରକୁ ଫୋପାଡ଼ି ଦେଇ) ନେଉନାହାନ୍ତି —ଏଠି ଧୋବା ସଫା କରିଥାନ୍ତା । ଆପଣଙ୍କ ଘରେ ବି ସେ ଧୋବା ସଫା କରିବ ।

ରବି ॥ ଗ୍ରେଟ୍ ! (ନଳ ଅନ୍ୟଆଡ଼େ ମୁହଁ ବୁଲେଇ ନେଇଥିଲା) କ'ଣ ଆପଣ ରାଗିଲେ ?

ନଳ ॥ (ନିର୍ଲିପ୍ତ ଗଳାରେ) ନା — ରାଗିବାର କିଛି ତ କାରଣ ନାହିଁ ।

ରବି ॥ ଦ୍ୟାଟସ୍ ଗୁଡ୍ — ଆଚ୍ଛା, ମୁଁ ତେବେ ଉଠେ —

ନଳ ॥ ଚା' ଖାଇ ଯିବେନି ?

ରବି ॥ ନାଃ, ଇଚ୍ଛା ନାହିଁ — ଆଚ୍ଛା, ଆସୁଛି, ନମସ୍କାର — (ସବେଗେ ପ୍ରସ୍ଥାନ କଲାବେଳେ)

ନଳ ॥ ଆରେ ଜାମାଟା ଛାଡ଼ି ଯାଉଛନ୍ତି ଯେ । ରୁହନ୍ତୁ, ମୁଁ ଖଣ୍ଡେ କାଗଜରେ ଗୁଡ଼ାଇ ଦିଏ । (କହି ଜାମାଟାକୁ ଉଠାଇ ନେଲା)

ରବି ॥ (ନରହ ଦୁଆର ପାଖରୁ) ଆପଣ ସଫା କରେଇ ରଖିଥିବେ — ମୁଁ ଏ ଜାମାଟା ଦେଇ ସେଇଟା କେବେ ଆସି ନେଇଯିବି ।

ନଳ ॥ (ଦୁଆର ପାଖକୁ ଯାଇ ଓ ବାହାରୁ ଅନ୍ଧାର ଭିତରକୁ ଚାହିଁ) କେବେ ? —(କୌଣସି ଉତ୍ତର ନ ପାଇ ନଳ ଧୀର ପଦକ୍ଷେପରେ ଘର ଭିତରକୁ ଫେରିଲା ଓ ଅନ୍ୟମନସ୍କ ଭାବରେ ବାହାର ଦରଜା ଆଡ଼େ ପିଠି କରି ଜାମାଟାକୁ ଦି' ହାତରେ ମୁଠାଇ ଧରିଲା — ବି.ବି.ସି.ରୁ ପୂର୍ବପରି ସଙ୍ଗୀତ ଚାଲିଛି । ଦାଣ୍ଡଦୁଆର ପର୍ଦ୍ଦା ଆଡ଼େଇ ମନୋଜ ଓ ସବିତା ଦେଖାଦେଲେ । ନଳକୁ ଏପରି ଅବସ୍ଥାରେ ଦେଖି ସବିତା ଓଠ ଉପରେ ଆଙ୍ଗୁଠି ରଖି ମନୋଜକୁ ଚୁପ୍ ରହିବାକୁ ଇଙ୍ଗିତ

ଦେଲ—ଉଭୟେ ଜୋତା ଶବ୍ଦ ଲୁଚି ଲୁଚି ଘରେ ପ୍ରବେଶ କଲେ । ସବିତା ନଳର ଖୁବ୍ ପାଖକୁ ଯାଇ ପଛପଟେ ନିଃଶ୍ୱାସ ବନ୍ଦ କରି ଠିଆ ହୋଇ ନଳ ମୁଠାଇ ଧରିଥିବା ଜାମାଟାକୁ ନିରୀକ୍ଷଣ କଲି, ତାପରେ ହାତଠାରି ମନୋଜକୁ ଡାକିଲି ଓ ସ୍ମିତ ହସି ପଞ୍ଜାବୀଟା ଦେଖାଇ ଦେଲି—ମନୋଜ ପଞ୍ଜାବୀଟା ଦେଖି ସବିତା ମୁହଁକୁ ପ୍ରଶ୍ନ-ସୂଚକ ଆଖିରେ ଚାହିଁଲି, ତା' ପରେ...

ମନୋଜ ॥ ନଳି !

ନଳି ॥ (ଖୁବ୍ ଜୋର୍‌ରେ ଚମକି ଚହ୍ଲାର କରି) କିଏ ?···(ତା'ପରେ ଜାମାଟା ଟେବୁଲ ଉପରକୁ ଫିଙ୍ଗି ଦେଲି—ସବିତା ନଳି କାନ୍ଧରେ ହାତ ରଖିଲି । ନଳି ଅଭିମାନ କଣ୍ଠରେ କହିଲି) ଯାଇ...ତୁମେ, ତୁମେ, ବଡ଼ ଇୟେ···

ମନୋଜ ॥ (ରସିକତା କରି) କ'ଣ ଇୟେ ? ଏଇ ଜାମାଟା କାହାର ? ସ୍ପନ୍ଦନ ଛକି ଯାଇଚ ତ ?···

ନଳି ॥ ଡାକ୍ତର ବାବୁଙ୍କର ?...

ମନୋଜ ॥ ମାନେ, ଆମ ରବର ।

ନଳି ॥ (ଚଢ଼ିଯାଇ) ଆଉ କେତେଟା ଡାକ୍ତର ଆମ ଘରକୁ ଅସନ୍ତି ?···

ମନୋଜ ॥ କିନ୍ତୁ, ତା'ର ଏ ଝାଳୁଆ ଜାମାଟା ତୋ' ହାତରେ ?···ସବିତା something strikes me very strange.

ନଳି ॥ (ଘୂର୍ବଗଳାରେ) ହଁ, ଖୁବ୍ strange (କ୍ଷିପ୍ରଗତିରେ ଭିତରକୁ ପ୍ରସ୍ଥାନ କଲେ । ଜାମାଟା ଉଠାଇ ନେଇ—ସବିତା ଓ ମନୋଜ ପରସ୍ପରକୁ ବିସ୍ମିତ ଓ ପ୍ରଶ୍ନସୂଚକ ଅଖିରେ ଚାହିଁଲେ—ମନୋଜ ଗୋଟାଏ ଚୌକିରେ ବସିପଡ଼ି)

ମନୋଜ ॥ ସବ ! ବାପୁନ କଡ ଲେଉଟାଇଲେ ଭୂମିକମ୍ପ ହୁଏ ନା ?

ସବିତା ॥ (ସ୍ମିତ ହସି) ହଁ, ହୁଏ···

(ପରସ୍ପରକୁ ଚାହିଁ ରହିଥିବା ବେଳେ ମଞ୍ଚ ଅନ୍ଧାର ହୋଇ ଆସିଲି—ବ. ବ. ସି. ରୁ ସଙ୍ଗୀତ ଶୁଣାଯାଉଥିଲି ।)



## ତୃତୀୟ ଦୃଶ୍ୟ

(ପୂର୍ବଦୃଶ୍ୟର ସ୍ଥାନ ଓ ସମୟ—କିନ୍ତୁ ବାହାରେ ପବନର ସାଇଁ ସାଇଁ ଶବ୍ଦ, ପର୍ଦ୍ଦାଗୁଡ଼ାକ ଉଡ଼ି ଉଡ଼ି ଯାଉଛି, ମନୋଜ ଝରକାଗୁଡାକ ବନ୍ଦ କରିବା ପାଇଁ ଯାଉଛି—ପିନ୍ଧିଛି ଖଣ୍ଡେ ସ୍ୱେଟର—ସବିତା ପ୍ରବେଶ କଲା— ତାକୁ ଦେଖି)

ମନୋଜ ॥ ସବି, ଝଡର ଉପକ୍ରମ—ନିଦ କ'ଣ କରୁଚ ?

ସବିତା ॥ ଶୋଇଚ—

ମନୋଜ ॥ ସନ୍ଧ୍ୟା ବେଳଟାରେ ? କେବେ ତ ଶୁଏନି ।

ସବିତା ॥ (ଚୌକିରେ ବସିପଡି)—ତମେ ତ ଜାଣିଚ ତା'ର କାରଣଟା ।

ମନୋଜ ॥ ସବୁଠୁ ବେଶି ଆଶ୍ଚର୍ଯ୍ୟ ଲାଗୁଛି ମତେ, ସବି—ଯୋଉ ଝିଅ ଝାଳଗନ୍ଧରେ ବାନ୍ତି କରି ପକାଉଥିଲା, ସିଏ ଫେର୍—

ସବିତା ॥ ତା' ବୋଲି କଅଣ ସମସ୍ତଙ୍କ ଦେହର ଝାଳଗନ୍ଧ ତାକୁ ଭଲ ଲାଗିବ ନା କ'ଣ ?

ମନୋଜ ॥ ଲାଗିବନି ? ତେବେ ପରୀକ୍ଷା କରିଯାଉ—

ସବିତା ॥ କିମିତି ପରୀକ୍ଷା କରିବ ?

ମନୋଜ ॥ (କିଛି ସମୟ ଭାବି) ଶୁଣ ସବି—ଗିଲାସେ ପାଣି ଆଣ ତ ।

ସବିତା ॥ କଅଣ କରିବ ?

ମନୋଜ ॥ ଆରେ, ତୁମେ ଆଣନା ଆଗେ—

ସବିତା ॥ (ହସି) ବୁଝିଲି—ଯାଃ-ତାକୁ ଚିଡାଅନି ଏମିତି ।

ମନୋଜ ॥ Please ତମେ ପାଣି ଗିଲାସେ ନେଇ ଆସ । (ସବିତାର ପ୍ରସ୍ଥାନ) —ମନୋଜ ସ୍ୱେଟରଟା ବାହାର କରି ଚୌକି ଉପରେ ରଖିଲା— —ତା'ପରେ ଯାଇ ଚୌକିରେ ବସିଲା—ସବିତା ଗିଲାସେ ପାଣି ନେଇ ପ୍ରବେଶ)

ମନୋଜ ॥ ଦେଲ ମୋ ଗଞ୍ଜି ଟାକୁ ଟିକେ ଓଦା କରି ।

ସବିତା ॥ ମୁଁ ପାରିବିନି—କି ଯେ ସବୁ ସଇତାନି ତମ ମୁଣ୍ଡରେ ପଶେ— ଶୀତ କରିବନି ।

ମନୋଜ ॥ ଦ'ଟନି ମିନିଟ ପାଇଁ ମୁଁ ସମ୍ଭାଳି ନେଇ ପାରିବି ।

ସବିତା ॥ ତମେ ନିଜେ ଓଦା କର ତମ ଗଞ୍ଜି— ଏଡ଼ୁ ଟିଏ ହେଲେଣି । ପିଲାଟାଆସି ଯାଉନି—

ମନୋଜ ॥ ଆଚ୍ଛା ଆଚ୍ଛା— ମୁଁ ନିଜେ କରୁଛୁ, ତମେ ଯାଅ ନିଲକୁ ଡାକି- ଦବ—

(ସବିତା ପ୍ରସ୍ଥାନ କଲା, ମନୋଜ ଗିଲାସରୁ ପାଣି ନେଇ ଗଞ୍ଜି ଟାକୁ ଓଦା କଲା—ତା'ପରେ ପଙ୍ଖାଟା ଖୋଲିଦେଇ ତା' ତଳେ ଯାଇ ବସିଲା—ଠିକ୍ ସେତିକିବେଳେ ହାତରେ ଗୋଟାଏ କାଗଜପୁଟୁଳା ଧରି ରବିର ପ୍ରବେଶ, ଜାମାଟା ଝାଳରେ ଓଦା ହୋଇଛି— ମନୋଜକୁ ଦେଖି)

ରବି ॥ କରେ—ପଙ୍ଖା ଖୋଲି ଦେଇ କ'ଣ କରୁଛୁ, ଶୀତ କରୁନି ।

ମନୋଜ ॥ (ଚୁଲିପଡ଼ି ଗୁହିଁ) ଆରେ, ଗୁଡ଼ା ବ୍ୟାଚେଲର ଯେ—ଆ ଆ—

ରବି ॥ (ମନୋଜର ସାମନା ସୋଫାରେ ବସିପଡ଼ି) ମୁଁ ଯାହା ପଚାରିଲି ତା'ର ଉତ୍ତର ଦେ—

ମନୋଜ ॥ ପନ୍ଦର ଦିନ ତଳେ ଆସିଥିଲୁ ବୋଲି ନିଲ କହୁଥିଲା—ତୁ ବାହାରି ଗିବାର ଠିକ୍ ଦ' ତିନି ମିନିଟ୍ ପରେ ଆମେ ଆସି ପହଞ୍ଚିଲୁ— ରବି, ବାହାରେ ବର୍ଷା ହେଉଛି ?

ରବି ॥ ନା, ଖାଲି ଗୋଟାଏ କାଲୁଆ ପବନ, ଝଡ଼ ହୋଇପାରେ—ଉଇଣ୍ଟର ଚେଞ୍ଜର ସୂଚନା···

(ସବିତା ସହିତ ନିଲର ପ୍ରବେଶ···ନିଲ ଆଖି ମଳଥା ମଳଥା— ଆଖି ମଳି ମଳି ଓ ହାଇମାରି ଆସୁଚ ।)

ନିଲ ॥ (କୁଆଡେ ନ ଗୁହିଁ) ମତେ କାହିଁକି ଡ଼ାକିଲ ଭାଇ—ମୁଁ କେଡ଼େ ବଢ଼ିଆ ନିଦରେ ଶୋଇଥିଲି—ନ ଆବୋଉ ଯାଇ ଉଠେଇ ଦେଲା···

ମନୋଜ ॥ କଅଣ ବଢ଼ିଆ ସ୍ୱପ୍ନ ଦେଖୁଥିଲୁ ।

ସବିତା ॥ ନମସ୍କାର ଡାକ୍ତର ବାବୁ ! (ନିଲ ଚମକିପଡ଼ି ଓ ଅପ୍ରସ୍ତୁତ ଭାବ ଦେଖେଇ)

ନଳ ।। ନମସ୍କାର—(ରବ ଉଭୟଙ୍କୁ ପ୍ରତିନମସ୍କାର କଲ—ନଳ ବିରକ୍ତି-ଭାବ ଦେଖାଇ ସ୍ୱରିତା ଆଡେ ଚାହିଁଲା—ସରିତ ତାହା ଲକ୍ଷ୍ୟ କରିପାରି)

ସରିତା ।। ଡାକ୍ତର ବାବୁ—ଆପଣ କେତେବେଳେ ଆସିଲେ ?

ମନୋଜ ।। ଏଇ ଅସି ବସୁଚି ତ ତୁମେ ଦୁହେଁ ଆସିଲ ।

ନଳ ।। (ସାମାନ୍ୟ ହସି) ହଠାତ୍ ଏ ଝଡ଼ ବତାସରେ ଯେ ! କୁଆଡ଼େ ଥିଲେ ଏଯାଏ ? (ମନୋଜ ଆଡ଼େ ଚାହିଁ ଓ ବିସ୍ମୟ ବିସ୍ଫାରିତ ନେତ୍ରରେ)

କି ଅଦ୍ଭୁତ ଲୋକ ତୁମେ ଭାଇ ? ଏ କାଲୁଆ ପବନରେ ଦେହ ଥରଯାଉଚି—ଆଉ ତୁମେ ପଙ୍ଖା ଖୋଲି ତା' ତଳେ ବସିଚ— (ପଙ୍ଖାଟା ବନ୍ଦ କରି ଦେଲା)

ମନୋଜ ।। ଆରେ, ଆରେ, ଖୋଲିଦେ ପଙ୍ଖାଟା—ଦେହରୁ ଝାଳଟା ମରିଯାଉ—

ନଳ ।। (ମନୋଜର ଗଞ୍ଜିକୁ ଚାହିଁ ଓ ବିସ୍ମିତ ହୋଇ) କଅଣ ହେଲ ?—ତମ ଦେହରେ ଝାଳ ? ଏ ଶୀତଦିନରେ ? ଅସମ୍ଭବ କଥା କହୁଚ ?

ମନୋଜ ।। ଅସମ୍ଭବ କାହିଁକି ଲଗୁଚି ତତେ ? ଶୀତ କରୁଥିଲା—ଖୁବ୍ କଣ୍ କରି ପଚ୍ଚିଶ ଷାଠିଏ ଦଣ୍ଡ ବୈଠକ ମାରି ଦେଲି, କବାଟ ଝରକା ବନ୍ଦ କରି—ବାସ୍ । ଘୁଡାଏ ଝାଳ ଗମ୍ ଗମ୍ ବୋହିଗଲା—

ନଳ ।। (ଧମକ ଦେଇ) ତା'ପରେ ପଙ୍ଖା ଖୋଲି ଦେଇ ତା' ତଳେ ବସି ପଡ଼ିଲ—କି ଯେ କାଣ୍ଡଜ୍ଞାନ ଶୂନ୍ୟ—ତୋର କି ଅକଲ, ନୂଆବୋଉ ?

ସରିତା ।। (ହସ ଚାପି) ମଲ—ମତେ କାହିଁକି ଦୋଷ ଦଉଚ ମ—ମୁଁ ତ ସିଆଡ଼େ ରାନ୍ଧୁଥିଲି, ଆସି ଦେଖିଲି ବେଳକୁ ଦଣ୍ଡବୈଠକ ମାରୁଛନ୍ତି—ତତେ ଡାକିବାକୁ ଗଲି—ସ୍ୱା ଭିତରେ—

(ମନୋଜ ଗଞ୍ଜିଟା ଖୋଲି ସେଥିରେ ଦେହ ଓ କାଖ ଭଲକରି ପୋଛିଲା)

ନଳ ।। ଡାକ୍ତର ବାବୁ ! ଆପଣ କମିତି ଚୁପ୍ ହୋଇ ବସିଛନ୍ତି, କିଛି କହୁ ନାହାନ୍ତି ?

ରବ ।। (ହସି) ମୁଁ ଆଉ କ'ଣ କହିବ ?

ନଳ ।। ହଁ, କ'ଣ ଆଉ କହିବେ, ନିଜେ ବି ତ ଝାଳ ଜୁଡ଼ୁବୁଡ଼ୁ ହୋଇ ଆସି ବସିଗଲେ ପଙ୍ଖା ତଳେ—ଅଣ୍ଡା ଲଗିବନି ? (ନଳ ମୁହଁରେ ଗୋଟାଏ ଚମତ୍କୃତଭାବ ଦେଖାଦେଲା—ସବିତା ଓ ମନୋଜ ପରସ୍ପର ମୁହଁକୁ ଚାହିଁ ଟିକିଏ ହସାହସି ହେଲେ)

ମନୋଜ ।। ଅଚ୍ଛା, ତେବେ ଏ ଗଞ୍ଜିଟା ନେଇଯା ନଳ—ଆଉଗୋଟେ ଆଣି ଦେ ।

(ଗଞ୍ଜିଟା ନଳଆଡେ଼ ବଢ଼ାଇ ଧରିଲା)

ନଳ ।। ( ନାସିକାକୁଞ୍ଚନ କରି ) ଇସ୍ ! ସେ ଝାଳୁଆ ଗଞ୍ଜିଟା ମୁଁ ଧରିବି ? (ମନୋଜ କପଟ-ବିସ୍ମୟ ଓ ରବି ପ୍ରକୃତ ବିସ୍ମିତ ଦୃଷ୍ଟିରେ ନଳ ଆଡ଼େ ଚାହିଁଲେ)

ମନୋଜ ।। ମତେ କ୍ଷମା କର ନଳ, ମୁଁ ଭୁଲି ଯାଇଥିଲି ଯେ ତୁ ଝାଳ ଗନ୍ଧ ପ୍ରତି ଭୀଷଣ ଆଲର୍ଜିକ...(ସବିତାକୁ ଗଞ୍ଜି ବଢ଼େଇ ଦେଇ) ନିଅ—ଆଉ ଗୋଟେ ଆଣିଦିଅ—

(ସବିତା ହସି ହସି ଗଞ୍ଜିଟା ନେଲା ଓ ନାକ ପାଖକୁ ନେଇ ଶୁଙ୍ଘିଲା)

ନଳ ।। ଇଃ—ନୂଆବୋଉ—ତୁ କି ଅସଭ!—ଆଉରି ତାକୁ ଶୁଙ୍ଘୁଛୁ ?

ସବିତା ।। କାହିଁ ଝାଳଗନ୍ଧ ହେଉନି ତ ? ତୁ ନିଜେ ଶୁଙ୍ଘି ଦେଖିନୁ···

ନଳ ।। ତୁମକୁ ଗନ୍ଧ ହେଉ ନଥିବ, ଭାଇଙ୍କ ଝାଳଗଞ୍ଜି ।

ସବିତା ।। (ହସି ହସି) ଆଲୋ, ତା ନୁହେଁ—ଗଞ୍ଜିଟା ପ୍ରକୃତରେ ଝାଳରେ ଓଦା ହୋଇନି...

ନଳ ।। ଆଉ ?

ମନୋଜ ।। ଦେଖ ସବିତା—ଏମିତି ମିଛ କଥା କୁହନି—

ସବିତା ।। ମୁଁ ଆଉ ସମ୍ଭାଳି ପାରୁନି ; ନଳରେ, ଶୁଣ୍, ତୋ ଭାଇଙ୍କ କୀର୍ତ୍ତି—ଗଞ୍ଜିଟା ଓଦାକରି ତୋତେ ଚଢ଼େଇବାକୁ ଏମିତି ଫେଚକାମି କରିହୋଇଛି, ହେଇ ଦେଖିନୁ ଗିଲାସରେ ପାଣି ।

ନଳ ।। (ଚିଡ଼ି ଉଠି) ଏବଂ ତୁ ବି ସେଥିରେ ଯୋଗଦେଇଛୁ ନୂଆବୋଉ, ଏ ସବୁର କି ଦରକାର ଥିଲା ?

ମନୋଜ ।। ତୋ'ର ପକ୍ଷପାତ ବିଚାର ଯୋଗୁଁ—ସେଦିନ ରବିର ସେଇ ଝାଳୁଆ ଜାମାଟା...

ସବିତା ।। (ଡାକ୍ତର ଧରିଥିବା ପୁଡ଼ିଆଟାକୁ ଦେଖାଇ) ସେ ପୁଡ଼ିଆଟା କ'ଣ କି ?

ରବି ।। ଏଁ ? ଓଃ ! ହଁ, ତୋର କାମିଜଟା ।

ମନୋଜ ॥ (ଅଣ୍ଟୁଟ ପ୍ରକାଶ କରି) ମୋ' କାମିଜଟା ! ତୁ କାହିଁକି ସେଇଟା ନେଇଥିଲୁ ?

ନଳ ॥ (ରବିକୁ ଇତସ୍ତତଃ କରିବାର ଦେଖି) ଡାକ୍ତର ବାବୁ ! ଦଅନ୍ତୁ ସେଇଟା ମତେ—(ଡାକ୍ତର ହାତରୁ ପୁଡ଼ିଆଟା ନେଇ) ସଫା କରି ଆଣିଛନ୍ତି ତ ?

ରବି ॥ (ଗମ୍ଭୀର ସ୍ୱରରେ) ଖୋଲି ଦେଖିପାରନ୍ତି--

ନଳ ॥ (ପୁଡ଼ିଆଟା ଖୋଲି ଓ କାମିଜଟା ରବି ଆଡ଼କୁ ବଢ଼ାଇଦେଇ) ଆପଣଙ୍କ କାମିଜଟା ଖୋଲିଦେଇ ଏ କାମିଜଟା ପିନ୍ଧନ୍ତୁ ।

ରବି ॥ (ସାମାନ୍ୟ ଆହତ ଗଳାରେ) କିଛି ଦରକାର ନାହିଁ, ମିସ୍ ଦାସ ।

ନଳ ॥ (ଗମ୍ଭୀର ସ୍ୱରରେ) ବେଶ୍ ଆଉ...(କାମିଜଟା ଚୌକି ବାଡ଼ରେ ରଖିଦେଲି ଓ ନିଜେ ବସିପଡ଼ିଲା । ସବିତା ଗୋଟାଏ ସଫା ଗଞ୍ଜି ଧରି ଫେରିଆସିଲା ଓ ମନୋଜ ହାତକୁ ଦେଲା । ମନୋଜ ଗଞ୍ଜି ପିନ୍ଧିଲା ।)

ରବି ॥ ମୋ କାମିଜଟା ଦଅନ୍ତୁ, ମିସ୍ ଦାସ—

ନଳ ॥ ଧୋବା ଦେଇଯାଇନି—

ସବିତା ॥ ତୁ ଡାକ୍ତର ବାବୁଙ୍କ କାମିଜଟା ଧୋବା ଘରେ ଦେଇଥିଲୁ ନଳ ?

ନଳ ॥ ହଁ—

ମନୋଜ ॥ ସବି ! କାଲି ଧୋବା ସବୁ ଲୁଗାପଟା ଦେଇଗଲା ନା ?

ନଳ ॥ (ରୁଦ୍ଧଗଳାରେ) ସେଥିରେ ସେ କାମିଜଟା ନ ଥିଲା, ଭୁଲ୍‌ରେ ଆଉ କାହାଘରେ ଦେଇଛି ନେଇ ।

ସବିତା ॥ (ସ୍ମିତ ହସି) ବଡ଼ ବଦ୍‌ମାସ ଧୋବା ତ—
ଡାକ୍ତର ବାବୁ, ଗଲା ଆପଣଙ୍କ ଜାମାଟି—

ରବି ॥ (ଶୁଷ୍କ ହସି) ଗଲେ ଗଲା— ଏତେ ଭାବିବା ଦରକାର ନାହିଁ, ସେଥିପାଇଁ—

ସବିତା ॥ କିନ୍ତୁ, ସିଏ ତ କେବେ କିଛି ହଜାଏନି କି ଗୋଳମାଳ କରେନି—

ମନୋଜ ॥ (ଗମ୍ଭୀର ସ୍ୱରରେ) ତା'ର ଏ ମାସ ଟଙ୍କାରୁ ପୂରାଦାମ୍ କାଟି ରଖିବାକୁ ହେବ ।

ନଳ ॥ ହଜେଇ ଦେଲା ତ ଦେଲା—ଟଙ୍କା କଟାହେବ କାହିଁକି ? ଏଇଟା ପ୍ରଥମ ଥର—ଆଉ ଯଦି ସେମିତି କରେ—

ମନୋଜ ॥ ନା ନା, ପ୍ରଥମ କଅଣ ଶେଷ କଅଣ ।

ରବି ।। ଆଚ୍ଛା, ମନୁ, ଗୋଟାଏ ସାମାନ୍ୟ କଥା ନେଇ ଏତେ ଆଲୋଚନା କାହିଁକି ଚାଲିଛି ?

ସବିତା ।। ହଉ, ଛାଡ଼ ସେକଥା—ଡ଼ାକ୍ତର ବାବୁ—ଚା' ଆଣେ ?

ମନୋଜ ।। ହଁ ହଁ, ନିଶ୍ଚୟ—ଯେମିତି କାଲୁଆ ପାଗ ହୋଇଛି ନା !

(ସବିତା ସି୍ମତହସି ପ୍ରସ୍ଥାନ କଲାବେଳେ)

ମୋ କଥା ଯେପରି ଭୁଲି ନ ଯାଅ ସାବି—(ଚୌକିରେ ଆଉଜି ଯାଇ)

ଆଉ, ରବି—ତୋ ଖବର କଅଣ କହ—

ରବି ।। କିଛି ନୂଆ ଖବର ନାହିଁ ।

ମନୋଜ ।। (କଡ଼ିକାଠ ଚାହିଁ)

ତୋର ନଳି ଉପରେ ଗୋଟେ ଖୋଜି ଡ଼ଉ ଅଛି—

ରବି ।। କାହିଁକି ?

ମନୋଜ ।। ଆରେ, କହିଲି ପରା—ନଳି ଆମର ଇଂରେଜୀ ଅଧ୍ୟାପିକା ହୋଇଗଲା······

ରବି ।। ବାଃ—ସୁଖବର—କନ୍‌ଗ୍ରାଚ୍ୟୁଲେସନ୍, ମିସ୍ ଦାସ !

ନଳି ।। ଧନ୍ୟବାଦ—

ରବି ।। କେବେ ଫିଷ୍ଟ ଦେଉଛନ୍ତି— ¡

ନଳି ।। (ଓଠ ଲେସେଇ) ଆଜିକାଲି ସମା, ଶାମ!, ଦାମା ବି ଅଧ୍ୟାପିକା ହଉଛନ୍ତି—

(ସବିତାର ପୁନଃ ପ୍ରବେଶ—ହାତରେ ଗୋଟାଏ ଲେଷ୍ଟ୍ କୋଷ୍ଟ୍ ମଇଳା ଜାମା—ଡାକ୍ତର ବାବୁଙ୍କ ପାଖକୁ ଆସି)

ସବିତା ।। ଦେଖିଲେ—ଏଇଟା ଆପଣଙ୍କ ଜାମା ?

ନଳି ।। (ଚମକି ଚାହିଁଲା ଓ ପ୍ରାୟ ଚିତ୍କାର କରି) ନୂଆବୋଉ !

ସବିତା ।। କଅଣ ହେଲା ?

ନଳି ।। କେଉଁଠୁ ପାଇଲ ସେ ଜାମା

ସବିତା ।। ଆଃ, ଏମିତି ରାଗି ଯାଉଛ କାହିଁକି ? ମୋର କାହିଁକି ମନେ ହେଲା, ତୁ ଅବା ଜାମାଟା ଧୋବାକୁ ଦବାକୁ ଭୁଲିଯାଇଚୁ, ଅଥଚ ଧୋବାଘରେ ପକେଇଚୁ ବୋଲି ଗୋଟାଏ ଧାରଣା ହୋଇଛି; ତେଣୁ ତୋ ଟ୍ରଙ୍କଟା ଖୋଲିଲି—ଦେଖିଲି, ଅଠ ସହରେ ଜାମାଟି ଚଉତା ହୋଇ ଟ୍ରଙ୍କରେ ଶୋଇଛି ।

ନଳି ।। (ଭୟଙ୍କର ଅପ୍ରସ୍ତୁତ ହୋଇ ଓ ଛଳ ଛଳ ଆଖିରେ)

କିଏ କହିଲା, ତମକୁ ମୋର ଟ୍ରଙ୍କ ଖୋଲିବାକୁ ?

(ହଠାତ୍ ନଳି ଚୌକିବାଡ଼ାରେ ମୁହଁ ଗୁଞ୍ଜି କାନ୍ଦି ଉଠିଲା—ରବି ଅତି ବିବ୍ରତ ହୋଇ ମୁଣ୍ଡପୋତି ବସି ରହିଲା)

ସବିତା ॥ (ନଳି ପାଖକୁ ଯାଇ ଓ ତା କାନ୍ଧରେ ହାତ ରଖି) ନଳି, ମୋର ଭୁଲ୍ ହୋଇଯାଇଛି, ମୋତେ ମାଫ୍ କର, ମୁଁ ଜାଣି ନ ଥିଲି ଯେ ତୁ ଏମିତି—

ମନୋଜ ॥ (ଉଠି ଠିଆହୋଇ) ସବି, ଶୁଣ ଇଆଡ଼େ—

ରବି ॥ ମୁଁ ଉଠେ ନନୁ—ମୁଁ ଭାରି ଦୁଃଖିତ ଯେ…

ମନୋଜ ॥ ଆରେ, ନା ନା ନା, ତୁ ବସ; ତୋର ଏଥିରେ ଏତେ ବ୍ୟସ୍ତ ହବା ଦରକାର ନାହିଁ—ହଠାତ୍ ଅସିଯାଇଛୁ ଯେତେବେଳେ, ଏଇଠି ଖାଇକରି ଯିବୁ । ସବିତା ଅଜ କୁକୁଡ଼ା ତରକାରି କରିଛି । ସବି, ଆସ ଆମର ଇଆଡ଼େ ବଢ଼ାବଢ଼ିର ବନ୍ଦୋବସ୍ତ କରିବା ।
(ମନୋଜ ଚାଲିଗଲା ଓ ତା’ ପଛେ ପଛେ ସବିତାର ଦୋଷୀ ଭଳି ପ୍ରସ୍ଥାନ—ରବି ଅସ୍ୱସ୍ତି ବୋଧକରି ଇଆଡ଼େ ସିଆଡ଼େ ଚାହିଁଲା—କ୍ରମେ ନଳି ଶାନ୍ତ ଶାନ୍ତ ହୋଇ ଆସିଲା । କାନିରେ ମୁହଁ ପୋଛି ସେ ମୁହଁ ଟେକି ଚାହିଁଲା; ଉଭୟେ ପରସ୍ପରକୁ ଚାହିଁଲେ)

ରବି ॥ କାହିଁକି ଏ ମିଛର ଆଶ୍ରୟ ନେବାକୁ ଯାଇଥିଲେ, ମିସ୍ ଦାସ ?

ନଳି ॥ ମୁଁ ଜାଣିନି, କାହିଁକି ?

ରବି ॥ (ହସି) ଜାଣନ୍ତି, ଖୁବ୍ ଭଲକରି ।

ନଳି ॥ ତେବେ ଅଉ ପଚାରୁଛନ୍ତି କାହିଁକି ?

ରବି ॥ (ବ୍ୟଥିତ କଣ୍ଠରେ) କିନ୍ତୁ, ମିସ୍ ଦାସ—ଆପଣ ତ ମୋ ବିଷୟରେ ଜାଣିଛନ୍ତି—ଜାଣି ଶୁଣି ବି କାହିଁକି ଏ ଭୁଲ୍…

ନଳି ॥ (ରବିକୁ ଚାହିଁ)—ଭୁଲ୍ ? ଠିକ୍ ସେଇ ଭୁଲ୍ ଅପଣ କରି ନାହାନ୍ତି ବୋଲି କହିବାକୁ ଚାହାନ୍ତି ?

ରବି ॥ (ଦୀର୍ଘ ନିଃଶ୍ୱାସ କରି) ନା—ଏବଂ ସେଇଥିପାଇଁ ଏ କେତେ ଦିନ ହେଲା ମୁଁ ଭୀଷଣ ମାନସିକ ଯନ୍ତ୍ରଣା ଭୋଗ କରୁଛି ।
(ନଳି ଉତ୍କଣ୍ଠାରେ ଚାହିଁଲା ରବି ମୁହଁକୁ—ଝଲକାଏ ପବନ ଘର ଭିତରକୁ ପଶିଆସିଲା—ରବି ଝରକା ପାଖକୁ ଉଠିଲା ଓ ବାହାରର ଅନ୍ଧାରକୁ ଚାହିଁ ରହିଲା)
ଅଧିକାଂଶ ରୋଗୀ ଆସି ମୋ’ ଘରୁ ଫେରି ଯାଉଛନ୍ତି । ଅସୁସ୍ଥତା ଦେଖାଇ ମୁଁ ତାଙ୍କୁ ଫେରାଇ ଦେଉଛି—କାରଣ, ଅକାରଣରେ

ଏହି ବାଟଦେଇ ମୁଁ ବହୁତ. ଥର ଯାଇଛୁ—ଅନ୍ଧାର ରାତିରେ—
ଏ ଘରକୁ କାର୍ ଅଟଣାଗ ଚାହିଁ ରହିଛୁ···

ନଳ ॥ (ଉତ୍ଫୁଲ୍ଲତା ମିଶା ଉତ୍କଣ୍ଠାରେ) କାହିଁକି ଏସବୁ କରୁଛନ୍ତି?

ରବ ॥ (ଚୁଲପଡ଼ି ନଳର ମୁହଁକୁ ଚାହିଁଲ—ମୁହଁରେ ଦ୍ୱନ୍ଦ୍ୱ ପରିସ୍ଫୁଟ—ଟେବୁଲ ପାଖକୁ ଚାଲିଆସି ତା' ଉପରେ ବସିପଡ଼ିଲ—ପକେଟରୁ ବାହାର କରି ଗୋଟାଏ ସିଗାରେଟ୍ ପ୍ୟାକେଟ୍ ଓ ଦିଆସିଲି—ଆସ୍-ଟ୍ରେଟା ପାଖକୁ ଭିଡ଼ି ଆଣିଲି) ଖଣ୍ଡେ ସିଗାରେଟ୍ ଖାଇପାରିବି, ନଳ·?

ନଳ ॥ (ଆନନ୍ଦରେ ଅଭିଭୂତ ହୋଇଗଲ—ସ୍ୱପ୍ନାବିଷ୍ଟ-ପ୍ରାୟ ଗଳାରେ)
ନିଶ୍ଚୟ······! !
(ସହଜ ଗଳାରେ) ଅଁରେ ଖାଲି ନା, ମତେ ପଚାରୁଛନ୍ତି କଅଣ ?

ରବ ॥ (ସିଗାରେଟ୍‌ରେ ନିଆଁ ଲଗେଇଲି—ତା'ପରେ ଦି'ଥର ଥର ଖୁବ୍ ଜୋର୍‌ରେ ସିଗାରେଟ୍ ନିଆଁ ଟାଣି ପେଟ ଭିତରକୁ ନେଇ କଅଣ ଫେର୍ ଯେପରି ଭାବିଲ—ନଳ ସେହିପରି ସ୍ୱପ୍ନାବିଷ୍ଟ ଦୃଷ୍ଟିରେ ରବକୁ ଚାହିଁ ରହିଥିଲ, କିଛି ସମୟ ପରେ ମୁହଁ ଟେକି)
ନଳ, ମୋ ପାଇଁ ମୁଁ ଆଦୌ ଦୁଃଖିତ ନୁହେଁ...ମୋର ଏ ମାନସିକ ଯନ୍ତ୍ରଣା କେବଳ ତମରି ପେଇଁ।

ନଳ ॥ (ତା ମୁହଁ ହଠାତ୍ ବିବର୍ଣ୍ଣ ହୋଇଗଲ) ମୋ ପେଇଁ !

ରବ ॥ ହଁ, ଅଜଯାଏ ମୋର ଧାରଣା ଥିଲ ମୋର ଗୋଟାଏ ଲୁହାର ମନ ଅଛି; କିନ୍ତୁ ସେ ଧାରଣା ଆଜି ଆଉ ନାହିଁ। (ଗୋଟାଏ ଦୀର୍ଘଶ୍ୱାସ ନେଇ)
ଏ ଅବସ୍ଥାରେ କଅଣ କରିବି ନ କରିବି କେବଳ ସେଇ କଥାଇ ମୁଁ ଖାଲି ଭାବୁଛି, ଏଇ କେତେଦିନ ଧରି—

ନଳ ॥ କଅଣ ଠିକ୍ କଲେ ଶେଷକୁ ?

ରବ ॥ (ବ୍ୟାଥାତୁର କଣ୍ଠରେ) ଶେଷ ଜୀବନ ଯାଏଁ ମୁଁ ମୋର ବନ୍ଧୁମାନଙ୍କ ପାଖରେ ବୁଢ଼ା ବ୍ୟାଚେଲର ହିଁ ରହିଗଲି, ନଳ—

ନଳ ॥ (ଚମକ ଓ ଅଶ୍ରୁସିକ୍ତ କଣ୍ଠରେ) କିନ୍ତୁ, କାହିଁକି ? କାହିଁକି ଆପଣଙ୍କର ଏ ଜିଦ୍ ? —ଯେଉଁଥିରେ ଆପଣ ବିଶ୍ୱାସ ହରେଇଛନ୍ତି, ତାକୁଇ ଆଶ୍ରୟ କରି ଆପଣ ସାରାଜୀବନ କଟେଇବେ କାହିଁକି ?

ରବ ॥ ନିରୂପାୟ ନଳ, ନିରୂପାୟ···କଲେଜରେ ପଢ଼ୁଥିଲବେଳେ ବ୍ୟାଚେଲର ରହିବାର ଗୋଟାଏ ସଂକଳ୍ପ କରିଦେଲି—ସମସ୍ତେ ବିଦିତ କରିଥାନ୍ତି—

ନଳି ॥ ପ୍ରାପ୍ତ ସମସ୍ତେ···କିନ୍ତୁ ପ୍ରତ୍ୟେକ ତ ନୁହନ୍ତି······

ରବି ॥ ମୁଁ "ପ୍ରାପ୍ତ ସେହି ସମସ୍ତ"ଙ୍କ ଭିତରୁ ଅଲଗା ରହିଗଲି—ମୋର ମନର ବଳକୁ ସମସ୍ତେ ଉତ୍ସାହିତ କଲେ—ଏଥିପାଇଁ ମୋର ବନ୍ଧୁମହଲରେ ଖୁବ୍ ପ୍ରଶଂସା ପାଇଲି । ମୋର ଏ ଅହଙ୍କାରର କଥାକୁ ସମସ୍ତେ ଚେତେଇବାରେ ଲାଗିପଡ଼ିଲେ—କ୍ରମେ ମୁଁ ଏ ଅବସ୍ଥାକୁ ଅତିରିକ୍ତ ଭଲ ପାଇଲି । ଶେଷକୁ ମୋର ମନେହେଲା ଏଇଟା ହିଁ ଯେପରି ମୋର ଅସଲ ବ୍ୟକ୍ତିତ୍ୱ—ନିଜକୁ ଗୋଟାଏ ବ୍ୟାଚେଲର ଛଡ଼ା ଆଉ କିଛି ରୂପରେ କଳ୍ପନା କରିପାରିଲି ନାହିଁ, ନଳି !

ନଳି ॥ (ଅଶ୍ରୁପୂର୍ଣ୍ଣ ଆଖିରେ) କିନ୍ତୁ ବର୍ତ୍ତମାନ ତ ଆପଣ ବୁଝିପାରୁଛନ୍ତି, ସେଇଟା ଆପଣଙ୍କର ଅସଲ ବ୍ୟକ୍ତିତ୍ୱ ନୁହେଁ ।

ରବି ॥ (ଦୀର୍ଘଶ୍ୱାସ ଛାଡ଼ି) ବୁଝିପାରୁଚ ନଳି—ସବୁ ବୁଝିପାରୁଚ—କିନ୍ତୁ ଗୋଟାଏ ସଇତାନ ଭଳି ମୋତେ ମାଡ଼ିବସିଚି ସେଇ ବୁଢ଼ା ବ୍ୟାଚେଲର୍ । ହୁଏତ ଆଜି ଯଦି ବିବାହ କରେ, ଯେଉଁମାନେ ମୋତେ ଏତେ ପ୍ରଶଂସା କରୁଥିଲେ, ସେଇମାନେ ହିଁ ତାଳିମାରି ହସିବେ ।

ନଳି ॥ କିନ୍ତୁ ଯାହା ସତ୍ୟ ଓ ସ୍ୱାଭାବିକ, ତାହା ହିଁ ତ ମନୁଷ୍ୟର କରିବା ଉଚିତ୍···

ରବି ॥ ଉଚିତ୍—କିନ୍ତୁ ମୁଁ ପାରୁନି ନଳି—ମୁଁ ପାରୁନି—ଅବିବାହିତ ରହିବାର ଅହଙ୍କାର ଗୋଟାଏ ଭୂତଭଳି ମୋତେ ମାଡ଼ିବସିଛି । (ଆଉ କିଛି ନ କହି ରବି ନୀରବରେ ସିଗାରେଟ୍ ଟାଣିଲା—ନଳି କାତର ଭାବରେ ଚାହିଁ ରହିଲା ରବିର ମୁହଁକୁ—କିଛି ସମୟ ପରେ ନଳି ମୁହଁକୁ ଚାହିଁ) ନଳି, ତରୁଣ ଜୀବନର ଗୋଟାଏ ପ୍ରଗଳ୍ଭ ସଂକଳ୍ପ ମୋ ଜୀବନର ଅଭିଶାପରୂପେ ଦେଖାଦେଇଛି—ଏଥିରୁ ମୁକ୍ତିନାହିଁ, ନିସ୍ତାର ନାହିଁ ।

ନଳି ॥ (ଉଠି ଠିଆହେଲା ଓ ଝରକା ବାଟଦେଇ ବାହାରକୁ ଚାହିଁଲା ଶୂନ୍ୟ ଦୃଷ୍ଟିରେ । ତା'ପରେ ଗୋଟାଏ ବ୍ୟର୍ଥ ହସ ହସି କହିଲା) ହୁଁ—ମୁକ୍ତି ନାହିଁ—ନିସ୍ତାର ନାହିଁ ।

ରବି ॥ (ନଳି ମୁହଁକୁ ବିବ୍ରତ ଭାବରେ ଚାହିଁ) ନଳି, ମୋତେ କ୍ଷମା କର ତୁମେ—ମୋତେ ଭୁଲିଯାଅ ।

ନଳି ॥ (ଚମକି) ଏଁ ! ଭୁଲିଯିବି ?(ବାହାରେ ଝଡ଼ର ପ୍ରକୋପ ବଢ଼ିଚାଲିଛି—ରବି ମୁହଁକୁ ସ୍ଥିରଦୃଷ୍ଟିରେ ଚାହିଁ ରୁଦ୍ଧ କଣ୍ଠରେ) ଆଉ ଆପଣ, ଆପଣ ଭୁଲିଯାଇ ପାରିବେ ?—ପାରିବେ ?

ରବି ।। (ଉଠିଆସି ଓ ନଳିର କାନ୍ଧରେ ହାତ ରଖି ହତାଶ କଣ୍ଠରେ) ତା' କ'ଣ କେବେ ସମ୍ଭବ ନଳି ? ଏଠି ଆମେରିକା ଆନ୍ଧ ଯୁଦ୍ଧରୁ ବନ୍ଧୁ ନାସ୍ତିର ଆକର୍ଷଣ-ପ୍ରଲୋଭନକୁ ଏଡ଼ିଦେଇ ଆସିଥିଲି—କିନ୍ତୁ ତମ ପାଖରେ ମୁଁ ହାରିଯାଇଛି, ନଳି । ମୋର ଏ ହାରିବାରେ ଗ୍ଲାନି ନାହିଁ—ଗୌରବ ଅଛି । ମୁଁ ତୁମକୁ ଭୁଲିଯିବାର ପ୍ରଶ୍ନ କାହିଁ ନଳି ? (ନଳିର କାନ୍ଧରେ ଅତି ଆବେଗରେ ଟିକିଏ ଚାପିଦେଇ ଅନୁନୟ କଣ୍ଠରେ) କିନ୍ତୁ, ମୋର ଅନୁରୋଧ ନଳି, ତମେ ମୋତେ ଭୁଲିଯାଅ—ଯାହାକୁ ଗୋଟାଏ ସମ୍ଭୃତାନ ମାଡ଼ିବସିଛି, ତା' ପାଇଁ ନିଜ ଜୀବନଟାକୁ ନଷ୍ଟକରି ଦିଅନା ।

ନଳି ।। (ଆଖିରୁ ଧାର ଧାର ଲୁହ ବୋହି ଯାଉଥିଲା) ଆପଣ ଦୁର୍ବଳ—ଗୋଟାଏ ଅର୍ଥହୀନ ଆଦର୍ଶରେ ମୋହାଚ୍ଛନ୍ନ ହୋଇ ନିଜର ଆତ୍ମାକୁ ଯେତେ ଇଚ୍ଛା ଅପମାନ ଦିଅନ୍ତୁ; କିନ୍ତୁ ମତେ କାହିଁକି—ମତେ କାହିଁକି ଅପମାନ ଦେଉଛନ୍ତି ଆପଣ ?

ଏଁ ! ଯିବେ ? (ଫେରିପଡ଼ି ରବି ମୁହଁକୁ ଚାହିଁଲା) କିନ୍ତୁ, ଭାଇ ଯେ ଆପଣଙ୍କୁ ଏଠି ଖାଇକରି ଯିବାକୁ କହିଲେ ।

ରବି ।। (ନଳି କାନ୍ଧରୁ ହାତଟା କାଢ଼ିନେଇ) କହିଦେବ, ମୁଁ ତା ଅନୁରୋଧ ରକ୍ଷା କରି ପାରିଲିନି ।

ନଳି ।। ବାହାରେ ଭୀଷଣ ଝଡ଼ ଯେ ।

ରବି ।। (ମୁଗ୍ଧ ଦୃଷ୍ଟିରେ କ୍ଷଣକ ପାଇଁ ନଳିର ମୁହଁକୁ ଚାହିଁ ଓ ଗଭୀର ବିଂଥାର ହସ ହସି) ଭିତରର ଝଡ଼ଠୁଁ ତ ବେଶି ନୁହେଁ—ଅସୁଚ୍ଛି ନଳି—(କ୍ଷିପ୍ର ଗତିରେ ପ୍ରସ୍ଥାନ) (ନଳି ଯନ୍ତ୍ରଣା ଓ ଅଶ୍ରୁ ପୂର୍ଣ୍ଣ ଆଖିରେ ସିଆଡ଼େ ଚାହିଁ ରହିଲା—ହଠାତ୍ ଗୋଟାଏ ଦମକା ପବନରେ ରବିର ଜାମାଉଡ଼ି ତଳେ ପଡ଼ିଗଲା—ନଳି ଜାମାଟାକୁ ଉଠାଇ ଧରି ଗୋଟାଏ ଆର୍ତ୍ତଚିତ୍କାର କରି)

ନଳି ।। ଡାକ୍ତର ବାବୁ—ଡାକ୍ତର ବାବୁ—ଡାକ୍ତର ବାବୁ—(ମନୋଜ ଓ ସବିତାର ବ୍ୟସ୍ତହୋଇ ପ୍ରବେଶ—ସବିତା ନଳି ପାଖକୁ ଦୌଡ଼ିଯାଇ ତା' କାନ୍ଧରେ ହାତରଖି)

ସବିତା ।। କ'ଣ ହେଲା ନଳି ? (ନଳି ହାତରେ ଜାମାଟାକୁ ଦେଖି) ଡାକ୍ତର ବାବୁ ଚାଲିଗଲେ ?

ନଳି ।। (ଅପଲକ ଦୃଷ୍ଟିରେ ବାହାରର ଅନ୍ଧାରଆଡ଼େ ଚାହିଁରହି) ବାହାରେ ଭୀଷଣ ଝଡ଼ ନୁଆବୋଉ !

ସବିତା ।। ଏଥିରେ ତୁ ତାଙ୍କୁ ଛାଡ଼ିଦେଲୁ କେମିତି, ନିଳି ?

ନିଳି ।। (ଦି' ଗାଲଦେଇ ଦି' ଧାର ଲୁହ ଗଡ଼ିପଡ଼ିଲା, ମୁହରେ ଗୋଟାଏ ବେଦନାତୁର ହସ ଫୁଟାଇ) ଝଡ଼ ଭିତରେ ଯିଏ ଯିବାକୁ ଭଲପାଏ, ତାକୁ ମୁଁ କେମିତି ଅଟକେଇ ରଖିବି, ନୂଆବୋଉ ?
(ମନୋଜ ଓ ସବିତା ଉଭୟ ବେଦନାପୂର୍ଣ୍ଣ ଦୃଷ୍ଟିରେ ନିଳିକୁ ଚାହିଁ-ରହିଲେ—ସବିତାର ଆଖିରୁ ଲୁହ ଝରିପଡ଼ିଲା—ମଞ୍ଚ କ୍ରମେ ଅନ୍ଧକାର ହୋଇଆସିଲା)



# ଆବିଷ୍କାର

ମନୋରଞ୍ଜନ ଦାସ

(ଆଧୁନିକରୁଚି ସମ୍ମତ ଖାପ ଖୁଆଇ ସଜା ଯାଇଥିବା ବଡ଼ ଏକ ଡ୍ରଇଁ-ରୁମ୍ — ଲମ୍ବା କାଚ ଆଲମାରୀଗୁଡ଼ିକରେ କେତେଖଣ୍ଡ ମୋଟା ଡାକ୍ତରୀ ବହି ଓ ଯନ୍ତ୍ରପାତି ଦେଖି ସ୍ପଷ୍ଟ ବୁଝି ହୋଇଯାଏ ଯେ, ଘରଟି ଜଣେ ଡାକ୍ତରଙ୍କର । ଛତିଶ ବର୍ଷ ବୟସର ତରୁଣ ଡାକ୍ତର ତପନ ଅସ୍ପଷ୍ଟ ସ୍ୱରରେ ଖବରକାଗଜ ପଢ଼ୁଥିଲେ—ଜଣାପଡ଼ୁଥିଲା, କୁଆଡେ ତରତର ହୋଇ ବାହାରି ଯିବାକୁ ସେ ଯେମିତି ବ୍ୟସ୍ତ — ତାଙ୍କର ପରବର୍ତ୍ତୀ କଥାବାର୍ତ୍ତାରେ ଅନ୍ୟମନସ୍କତାର ଆଭାସ—ସେ ପାଟିକରି ଡାକିଲେ)

।। ଚରିତ୍ର ।।

ତପନ
ଶିବନାରାୟଣ
(ବୁଢ଼ା)
ଅରୁଣ
ଟୁଲୁଟୁ
ବାବୁ

ଶୋଭା
ସୀମା

ତପନ ।। ଶୋଭା ! ଗ୍ଲ' ହେଲା ?

ଶୋଭା ।। ନଉଚି (ତପନଙ୍କ ସ୍ତ୍ରୀ ଭିତରକୁ ପଶି ଆସିଲେ—ଧଳପାଟୀ ଅତି ସରଳ—ଶିଥିଳ ଦେହରେ ଏକ ମାନସିକ କ୍ଲାନ୍ତି ଓ ଅବସାଦ ଫୁଟି ବାହାରୁଥାଏ ।)

ତପନ ।। (କାଗଜଟା ଦେଖାଇ) ଦେଖିଲ, ଓଡ଼ିଶାରେ ଖୁବ୍ ବଢ଼ି ହୋଇଛି । ବ୍ରାହ୍ମଣୀ, ବୈତରଣୀ, ମହାନଦୀ, ଖରସ୍ରୋତା ସବୁ ମିଶି ଏକାକାର— ଉଃ ! ଗଲ ସପ୍ତାହଟା ।

ଶୋଭା ।। ତମ ଗାଁର କିଛି ହୋଇନି ତ ?

ତପନ ।। ଗାଁ ବୋଧହୁଏ ଛିନ୍ନଛତ୍ରପ ହୋଇ ଯାଇଥିବ, ତେବେ ଶିରେନାସ୍ତି ଶିରୋପୀଡ଼ା କାହିଁକି ? ନିଜର ଘରଦ୍ୱାର ତ ନାହିଁ—ସେ ବିଷୟରେ ଚିନ୍ତାକରି ଲାଭ କ'ଣ ? ଗୋଟିଏ ଢଗରୁ ବାପା ଭଲ କରିଦେଇ ଯାଇଥିଲେ । କେବଳ ଘରଡ଼ିହଟା—ଆଉ କଟକ କୋଠା ଛାଡ଼ି ସବୁ ସମ୍ପତ୍ତି ସେ ଖର୍ଚ୍ଚ କରି ବୋଉ ହାତରେ ଗଚ୍ଛିତ ପାଣ୍ଠି ରଖିଦେଇ ଯାଇଥିଲେ । ଗୋଟାଏ ଢଗରୁ ଭଲ ନୁହେଁ ତ ଅଉ କ'ଣ ? ଅନେକ ଝିନ୍‌ଝଟ ସମସ୍ୟା ତ ଅନ୍ତତଃ କମିଯାଇଛି ।

ଶୋଭା ।। ହଁ, ତମେ ନିଜ ଘରଦ୍ୱାର ଗାଁଗଣ୍ଡା ଛାଡ଼ି ବାହାରେ ବୁଲୁଚ ବୋଲି ଏମିତି କହୁଚ ? ଯେଉଁମାନଙ୍କର ସେ ଗାଁ ଛାଡ଼ିବାର ଉପାୟ ନାହିଁ, ସେମାନେ ଏମିତି ମୁହଁ ମାଡ଼ି ନ ପଡ଼ି ଅଉ କ'ଣ କରିବେ ?

ତପନ ।। ତା' ଛଡ଼ା ଗାଁ ଛାଡ଼ି ସମସ୍ତେ ଚାଲିଆସିଲେ ସମାଧାନ ହୋଇପିବ ନାହିଁ । ଆଉ ଆମେ ଯେ ଗାଁରୁ ବହୁଦୂରରେ ରହୁଛୁ ବୋଲି ସବୁ ଦୁର୍ଘଟଣାରୁ ଆମେ ମୁକ୍ତ, ସେ କଥା ତ ନୁହେଁ, ଧର ଏବେ ଯଦ ଯମୁନାର ବନ୍ଧଟା ଫାଟିଯିବ—(ମଟର ଗ୍ୟାରେଜରୁ ବାହାରିବା ଶବ୍ଦ)

ଶୋଭା ।। ଏତେ ସକାଳୁ ଗାଡ଼ି କ'ଣ ବାହାରିଲାଣି ?

ତପନ ।। ଦେଖି ପାରୁନ ?

ଶୋଭା ।। ଆରେ ସତେ ତ, ତମେ ବି ତ ପୋଷାକପତ୍ର ପିନ୍ଧି ଠିଆ, ଏତେ ସକାଳୁ କୁଆଡ଼େ ?

ତପନ ।। ରୋଗୀ ଦେଖିବା ପାଇଁ ଯିଏ ଚଉଷଠି ଟଙ୍କା ଫିସ୍ ନିଏ, ତା'ପାଇଁ ସକାଳ ସନ୍ଧ ବିଚାର କ'ଣ ?

ଶୋଭା ।। ରୋଗୀ ଦେଖି ?

ତପନ ।। ଅଉ କ'ଣ ତା' ହେଲେ ?

ଶୋଭା ।। କିଏ ଜାଣିଚି ତମ କଥା ଲୋ ମା' ?

ତପନ ।। ଶୋଭା ତୁମେ ଏଣିକି ମତେ ପ୍ରତି କଥାରେ ଅବିଶ୍ୱାସ କଲଣି ।

ଶୋଭା ।। ରାଗିଲ ? (ହସି ପକାଇ) ମୁଁ ତୁମକୁ ଚିଡ଼ାଇବା ପାଇଁ ସେମିତି କହିଦେଲି ନା ।

ତପନ ।। ଓଃ...(ଯେମିତି ଶୋଭାର କୈଫିୟତରେ ସେସବୁ ଭୁଲିଗଲେ ।) ବୁଢ଼ା ଉଠିଲେଣି ?

ଶୋଭା ।। ଖାଲି ଉଠିଲେଣି ? ସକାଳର କାମସାରି ରେଡ଼ିଓ ଶୁଣୁଛନ୍ତି ।

ତପନ ।। କିଛି ଭଲ ପାଇଲ, ତାଙ୍କର ପରିଚୟ ?

ଶୋଭା || ନା ।

ତପନ || ନା ମାନେ ? ପଚାରିନା ନା କ'ଣ ?

ଶୋଭା || ଚେଷ୍ଟା କରିଛି ଅନେକ ଥର ; କିନ୍ତୁ ସବୁବେଳେ ସେଇ ଗୋଟିଏ ଉତ୍ତର ।

ତପନ || କ'ଣ ? "ମୋର କିଛି ପରିଚୟ ନାହିଁ ।"

ଶୋଭା || କାଲି ରାତିରେ ଆଉଥରେ ପଚାରିଥିଲି—କହିଲି, କାହା ପାଖକୁ ଖବର ଦେବାକୁ ହେବ ?

ତପନ || କ'ଣ କହିଲେ ?

ଶୋଭା || କହିଲେ, ମୋର କେହି ନାହିଁ ।

ତପନ || ଅବଶ୍ୟ ସେ ପୁନାରୁ ଯେ ଆସିଛନ୍ତି, ସେଥିରେ ସନ୍ଦେହ ନାହିଁ ।

ଶୋଭା || କେମିତି ଜାଣିଲ ?

ତପନ || କାର୍ ପୁନାରେ ରେଜେଷ୍ଟ୍ରି କରାଯାଇଛି ।

ଶୋଭା || ମୁଁ ପୁନା କଥା ପଚାରିଥିଲି ।

ତପନ || ମୁଁ ବି ପଚାରିଥିଲି—

ଶୋଭା || ଦୀର୍ଘ ନିଃଶ୍ୱାସ ପକାଇ କହିଲେ, "ଭାରତର ବାରଟା ସହରରେ ମୋର ଘର ଅଛି...ମଣିଷ ନାହାନ୍ତି··· । ଏ ଘରେ ମତେ ଅଳ୍ପ କେତେଦିନ ଆଶ୍ରୟ ଦେବାକୁ ରାଜି ନୁହଁ ତୁମେ ?" ମୁଁ ଆଉ କିଛି ପଚାରି ପାରିଲି ନାହିଁ ।

ତପନ || ଭଲ କରିଛ ।

ଶୋଭା || ତୁମେ ଥରେ ପଚାରୁନା ?

ତପନ || ଜାଣିନା, କାହିଁକି ପଚାରି ପାରୁନି । ତାଙ୍କର ସେଇ କମ୍ରୀର ପେଟର ମୋଟା ଅଥଚ ଚିକ୍କଣ ଚମତ୍କାର ମୁହଁ ; ସେଇ ଅଶାନ୍ତ ଅଶାନ୍ତ ଓଠ, ସେଇ ଦେଖିପାରୁ ନ ଥିବା ଭିତରେ ତୀବ୍ର ଦୃଷ୍ଟିରେ ଚାହିଁବାର ଭଙ୍ଗୀ, ଏସବୁ ଭିତରେ ସତେ, ସତେ ମୁହଁ ଖୋଲୁନି ତାଙ୍କୁ କିଛି ପଚାରିବାକୁ । ମୁଣ୍ଡଫଟା ହାଡଭଙ୍ଗା ବା ଆକ୍‌ସିଡ଼େଣ୍ଟରେ ଅନ୍ୟ ଜଖମ ହୋଇଥିବା ରୋଗୀଙ୍କୁ ଡାକ୍ତର ହିସାବରେ ମୁଁ ହାତରେ ଗୋଡ଼ାମାଟି ଚିକିତ୍ସା କରି ଆସିଛି—କିନ୍ତୁ କ'ଣ ବା ଆକସିଡ଼େଣ୍ଟ ନେଇ ସେ ଆସିଥିଲେ ଡାକ୍ତରଖାନାକୁ...? କାରଟା ପ୍ରାୟ ଚୂନା ହୋଇଯାଇଥିଲା ; କିନ୍ତୁ ମୁହଁ ହାତରେ ସାମାନ୍ୟ ଆଘାତ...ଷ୍ଟିୟରିଂଟା ପିଟି ହୋଇଯାଇଥିଲା··· ନାକ ଆଉ ଆଖି ଉପରେ । ଆଖି ଦୁଇପଟରେ ମସଲ୍‌ଗୁଡ଼ାକ ଚିପି ହୋଇ ରକ୍ତ ବାହାରୁଥିଲା । (କିଛି ସମୟ ଚୁପ୍ ରହି) ବ୍ୟାଣ୍ଡେଜ୍

ଖୋଲି ନପିବାଯାକେ କିଛି କହିହେଉନି ··ସେ ଦୃଷ୍ଟି ଫେରି ପାଇଲେ କି ନାହିଁ ।

ଶୋଭା ।। ତମେ ଭଲକରି ଦେଖିଥିଲଟି ?

ତପନ ।। ନା, ତେବେ ଅରୁଣ କହୁଛି···

ଶୋଭା ।। ତୁମେ ଦେଖ୍‌ନା – ସବୁଦିନେ ଅରୁଣ ଆସି କ'ଣ ଟିକେ ଦେଖି ଯାଉଛନ୍ତି ।

ତପନ ।। ଅରୁଣ ବାଳେ ଡାକ୍ତର ନୁହେଁ, ଶୋଭା !

ଶୋଭା ।। ସେ କଥା ତ କହୁନି, ତେବେ ତୁମେ ନିଜେ ନ ଦେଖି···

ତପନ ।। ମୁଁ ନିଜେ କିଛି ତାଙ୍କୁ ପରୀକ୍ଷାପାରୁନି । ସେଦିନର କଥା ଆଜି ବି ସ୍ପଷ୍ଟ ମନେଅଛି । ଅପରେସନ ଟେବୁଲକୁ ନେବା ଆଗରୁ ହଠାତ୍ ତାଙ୍କ ପାଇ ସେଇ ଛୋଟ୍ଟ ଛୋଟ୍ଟ କପାଳ ଉପରେ ହାତ ଥୋଇଦେଲି··· ଲୁହାର ଶିକୁଳିରେ ବନ୍ଧ ଦେଲା ପରି ତାଙ୍କର ଦୁଇହାତରେ ବାହାକୁ ମୋର ଚିପିଧରି କହିଲେ, "ଡାକ୍ତର ! ମତେ ଏ ଡାକ୍ତରଖାନାରେ ରଖନା ।" ଜାଣ ଶୋଭା, କ'ଣ ହେଲା ମୋର ? ହଠାତ୍ ମୁଣ୍ଡଟା ଭଉଁରୀ ଖାଇ ବୁଲିଗଲା, ଅବଶ ଅନୁଭବ କଲି, ତା'ପର ଅରୁଣଙ୍କୁ ଡାକି ଏ କେସ୍‌ଟା ଦେଇ ଫେରିଆସିଲି ଚେମ୍ବରକୁ । ସେଠି ବି ବସିପାରିଲି ନାହିଁ···ଅପରେସନ୍ ଟେବୁଲରୁ ବେଡ଼କୁ ନିଆ ଯାଉଥିଲା, ବାଟରୁ ଛଡ଼ାଇ ଆଣିଲି ପରି ନିଜ କାର୍‌ରେ ଆଣି ରଖିଲି । ବାଟରେ ଚେତା ହେବାପରେ ମତେ କହିଲେ, "କୁଆଡେ ? ଘରକୁ ନେଇଯାଉଛ ଡାକ୍ତର ? ଗାଡ଼ି ଫେରାଇ ଡାକ୍ତରଖାନାକୁ ନେଇଚାଲ । ତୁମେ ସେଣ୍ଟିମେଣ୍ଟାଲ ହୋଇଯାଉଛ, ଡାକ୍ତର !"

ଶୋଭା ।। ଭଲ କରିଚ, ଡାକ୍ତରଖାନାରେ ନ ଛାଡ଼ି । ଆଗ ସେ ଭଲ ହୋଇଯାନ୍ତୁ ···ତା'ପର···

ବୁଢ଼ା ।। (ଦୂରରୁ) ଶୋଭା, କାଗଜ ଆସିଲାଣି ?

ତପନ ।। ଏଇ, ସେ ଉଠିଆସୁଛନ୍ତି ନା କ'ଣ ?

ଶୋଭା ।। ଘରବୁଢ଼ାକ ଚାହିଁଗଲେଣି । ହାତ ମାରି ମାରି ଠିକ୍ ଚାଲିଆସିବେ ।

ତପନ ।। ଜଲୁ···

ଶୋଭା ।। ଅରୁଣ କହୁଛନ୍ତି, ସାମାନ୍ୟ ଏପଟ ସେପଟ ହେଲେ କିଛି କ୍ଷତି ନାହିଁ । ଅନ୍ତତଃ ମନଟା···

ତପନ ।। ଓଃ···

ବୁଢ଼ା ।। କାଗଜ ଆସିଲାଣି ? (ବୁଢ଼ା ପଶିଆସିଲେ – ଶରୀରର ଗଠନ, ଚେହେରର ଇଙ୍ଗିତରୁ ପରହାସ କରୁଛୁ, କଥାବାର୍ତ୍ତାରେ ଦୃଢ଼ତାର ଆଭାସ, ଆଖିରେ ବ୍ୟାଣ୍ଡେଜ...)

ଶୋଭା ।। ଆସିଲାଣି । (ସେ ଗୋଟାଏ କାଉଚରେ ବସାଇ ଦେଲେ)

ବୁଢ଼ା ।। ଦେଖିଲୁ ସିମିଲାରେ ବରଫ ପଡ଼ିବା କଥା କଣ ବାହାରିଛି ?

ଶୋଭା ।। ଦେଖିଲ ସିମିଲାରେ...(କାଗଜଟା ଟେବୁଲ ଉପରୁ ତପନଙ୍କୁ ବଢ଼ାଇ ଦେଇ)

ତପନ ।। ଉଁ – ସିମିଲାରେ...(ପୃଷ୍ଠା ଓଲଟାଇବାରେ ବ୍ୟସ୍ତ)

ବୁଢ଼ା ।। କଏ, ଡାକ୍ତର ନା...(ପାଟିକରି) କଏ?

ତପନ ।। ମୁଁ, ତପନ...

ବୁଢ଼ା ।। ସିମିଲା ବରଫ କଥା କଣ ଅଛି ?

ତପନ ।। ନା ତ ।

ଶୋଭା ।। ଅପଣଙ୍କ ଚ୍ୟୁ'ଟା ଏଇଠିକି ?

ବୁଢ଼ା ଟୁଲୁଟୁ ଖାଇଲାଣି ?

ଶୋଭା ।। ସେ...? ଆପଣ ଖାଇ ନଥିଲୁ, ମୁଁ ତାକୁ ପ୍ରଆଡେ...(ସେ ବାହାରି-ଗଲେ)

ବୁଢ଼ା ।। ନା ନା, ଟୁଲୁଟୁ ମୋ ସଙ୍ଗେ ଚ୍ୟୁ' ଖାଇବ । ଟୁଲୁଟୁ...ଟୁଲୁଟୁ । (ଟୁଲୁଟୁ ପଶି ଆସିଲା । ଏଗାର ବାର ବର୍ଷର ସ୍ୱାସ୍ଥ୍ୟବାନ ପିଲା । କଥା-ବାର୍ତ୍ତା, ବ୍ୟବହାର ସବୁଥିରେ ଚଞ୍ଚଳତା ।)

ଟୁଲୁଟୁ ।। ତୁମେ ଚ୍ୟୁ' ଖାଇନା ଅଜା ?

ବୁଢ଼ା ।। ନା, ତତେ ଅପେକ୍ଷା କରିଚ । (ଚ୍ୟୁ' ଟ୍ରେ ଧରି ପଶିଆସିଲେ ଶୋଭା) ବାସନା ଜାଣିପାରୁଛୁ, ଚ୍ୟୁ' ଆସିଲା ବୋଧହୁଏ...।

ଶୋଭା ।। ରୁ ଏ ଗ୍ଲେଟ କପ୍‌ଟା ଧର ଟୁଲୁଟୁ—ଆପଣ ଧରନ୍ତୁ ପିଆଲଟା, ମୁଁ ଢ଼ାଳଦେଉଛି ।

ଟୁଲୁଟୁ ।। ନା ବୋଉ, ମୁଁ ଅଜାଙ୍କୁ ଚ୍ୟୁ' ଖୁଆଇ ଦେଉଛି ।

ବୁଢ଼ା ।। ଆଚ୍ଛା, ଆଚ୍ଛା ।

ଟୁଲୁଟୁ ।। ଆଜ କେମିତି ଲାଗୁଛି ଅଜା ? (ଟୁଲୁଟୁ ହାତରୁ ଚ୍ୟୁ' ଖାଉ)

ବୁଢ଼ା ।। ଖୁବ୍ ଭଲ, ଏଠିକି ଆସିବାର ଏ ଦ' ସପ୍ତାହ ଭିତରେ ଏମିତି କେବେ ଭଲ ଲାଗି ନ ଥିଲା । ଡାକ୍ତର ! କ'ଣ ବସିଛ ନା ଉଠିଗଲଣି ?

ତପନ ।। ଅଛୁ, ଆଜ୍ଞା !

ବୁଢ଼ା ।। ଟୁଲୁଟୁର ବୟସ କେତେ ହେଲା ?

ତପନ ॥ ଶୋଭା, ଟୁଲୁଟୁକୁ···
ଶୋଭା ॥ ବାର ବର୍ଷ...
ବୁଢ଼ା ॥ ଓଃ ଜବାନ ଟୋକା ତେବେ । ଆଚ୍ଛା ଟୁଲୁଟୁ, ତୋ ଓଜନ କେତେ ?
ଟୁଲୁଟୁ ॥ ପଞ୍ଚସ୍ତରୀ ପାଉଣ୍ଡ ।
ବୁଢ଼ା ॥ ଉଚ୍ଚତା ?
ଟୁଲୁଟୁ ॥ ···ମୋ' ମନେ ନାହିଁ ।
ବୁଢ଼ା ॥ ଡାକ୍ତର ଟୁଲୁଟୁକୁ ସ୍କୁଲକୁ ସାଇକଲରେ ପଠାଉନା ତ ?
ତପନ ॥ କାହିଁକ, କ'ଣ ହେଲା ?
ବୁଢ଼ା ॥ ନା ନା, ସେଦନ ଏମିତ ଗୋଟାଏ ପିଲା ସାଇକେଲ ଧର ହମ୍ବୀର ହଠାଣି ଗଡ଼ାଣି ରାସ୍ତାରେ ମୋ' କାର୍ ସଙ୍ଗେ 'ରେସ୍' କରୁଥିଲା । ହଠାତ୍ କ'ଣ ତା'ର ମନ ହେଲା କେଜାଣି, କାର୍‌ଟାକୁ ଟପି ଯିବାକୁ ଚେଷ୍ଟା କଲାବେଳେ ସାଇକେଲରୁ ତଳେ ଖସିପଡ଼ିଲା—ତାକୁ ବଞ୍ଚାଇବାକୁ ଚେଷ୍ଟା କର···ମୁଁ...
ଶୋଭା ॥ ମୁଁ କହିବ, ତଥାପି ବ ଭାଗ୍ୟ ଆପଣଙ୍କ ସପକ୍ଷରେ ଥିଲା···ଗାଡ଼ିଟା ପୋଲରେ ବାଡେଇ ନ ହୋଇ ଯଦ ତଳକୁ ଖସି ପଡ଼ିଥାନ୍ତା··· ତା'ହେଲେ ତ...
ଟୁଲୁଟୁ ॥ ବାପା କହୁଥିଲେ, ସେ ପିଲାର କଛି ହୋଇନ । ଅଜାଙ୍କ ଗାଡ଼ି ଯାହା ଖାଲି ଭାଙ୍ଗିଗଲା, ଆଉ ସେ ନାକରେ ଆଖିରେ ଚୋଟ୍ ଖାଇ ଡାକ୍ତରଖାନାକୁ ଗଲେ ।
ବୁଢ଼ା ॥ ଡାକ୍ତର, କାଲିଠୁ ଟୁଲୁଟୁ ଆଉ ସ୍କୁଲକୁ ସାଇକେଲରେ ଯିବନ ।
ଟୁଲୁଟୁ ॥ ସାଇକେଲରେ ଯିବନ, ତେବେ କେମିତ ଯିବ ଅଜା ?
ବୁଢ଼ା ॥ ଚାଲିକର ।
ଟୁଲୁଟୁ ॥ (ତାଳମାର ନାଚଗଲା) ଅଜା କଛି ଜାଣିନାହାନ୍ତି ବୋଉ—ଅଜା, ବୃଣମାଇଲ ରାସ୍ତା ।
ତପନ ॥ କୋଉ ଗୋଟାଏ ପିଲାର କ'ଣ ହୋଇଗଲା ବୋଲି ଯେ, ସବୁ ପିଲା···
ବୁଢ଼ା ॥ ପ୍ରତବାଦ କରନା, ଡାକ୍ତର !
ତପନ ॥ କିନ୍ତୁ, ଟୁଲୁଟୁ ଯେ ସ୍କୁଲକୁ...
ବୁଢ଼ା ॥ ଟୁଲୁନୁ ପାଇଁ କାର୍ କଣିଦଅ ।
ଶୋଭା ॥ କାର୍ !
ବୁଢ଼ା ॥ ମୁଁ ଦେବ—ମୋର 'ଆଟାଚି' ଟା ଆଣ ··
ଶୋଭା ॥ 'ଆଟାଚି' ?

ବୁଢ଼ା ॥ ହଁ, ମୋର 'ଆଟାଚି'ଟା କ'ଣ ହେଲ ?
ଶୋଭା ॥ ଆପଣଙ୍କ ଶୋଇବା ଘରେ ଥୁଆ ହୋଇଛି ।
ବୁଢ଼ା ॥ ଖୋଲନା ତାକୁ ?
ଶୋଭା ॥ ନା ।
ବୁଢ଼ା ॥ ଖୋଲି ଦେଖ, ପ୍ରାୟ ଲକ୍ଷେ ଟଙ୍କାର ନୋଟ ଥିବ ।
ତପନ ॥ କ'ଣ କହୁଛନ୍ତି, ଆପଣ ?
ବୁଢ଼ା ॥ ପ୍ରତିବାଦ କରନା ଡାକ୍ତର ! (ଆର ପାଖ ଘରେ ଟେଲିଫୋନରେ ଶବ୍ଦ ହେଲ ।)
ତପନ ॥ ଦେଖେ, ପୁଣି ସକାଳୁ କିଏ ଫୋନ କଲାଣି ? (ସେ ଛୁଟି ଚାଲିଗଲେ)
ଶୋଭା ॥ ଆପଣ ବିଛଣାରେ ଆପଣଙ୍କୁ ··
ବୁଢ଼ା ॥ ଏଇଠି ଭଲ ଲାଗୁଛି । ତୁମେ ଯା, ଦରକାର ହେଲେ ଟୁଲୁଟୁ ମତେ ବିଛଣାରେ ନେଇ ଛାଡ଼ିଦେଇ ଆସିବ । (ଶୋଭା ଚାଲିଗଲେ)
ଟୁଲୁଟୁ ॥ ତମର ଏତେ ଟଙ୍କା ଅଛି, ଅଜା ?
ବୁଢ଼ା ॥ ତୋର ଲୋଭ ହେଉଛି କିରେ ?
ଟୁଲୁଟୁ ॥ ତମେ କିଏ ଅଜା ? ତମ ଘର କେଉଁଠି ?
ବୁଢ଼ା ॥ ଘର—? ହୁଁ, ଘର ସବୁ ଏଠି ।
ଟୁଲୁଟୁ ॥ ତମର କ'ଣ କେହି ନାହାନ୍ତି, ଅଜା ?
ବୁଢ଼ା ॥ ମୋର, ତୁ ସବୁ ଅଛୁ ।
ଟୁଲୁଟୁ ॥ ନା ଅଜା, କହ...।
ବୁଢ଼ା ॥ (କେମିତି କଷ୍ଟରେ ଦୀର୍ଘ ନିଃଶ୍ୱାସ ପକାଇ) ଆଉ ଟୁଲୁଟୁ...
ଟୁଲୁଟୁ ॥ କୁଆଡ଼େ ଯାଉଥିଲ ତୁମେ, ଅଜା ?
ବୁଢ଼ା ॥ ସିମଲା ।
ଟୁଲୁଟୁ ॥ କାହିଁକି ?
ବୁଢ଼ା ॥ ପ୍ରଥମ ଶୀତରେ ବରଫ କେମିତି ପଡ଼େ, ଦେଖିବାକୁ...
ଟୁଲୁଟୁ ॥ ଖାଲି ବରଫ ଦେଖିବା ପାଇଁ ତୁମେ ସିମିଲା···
ବୁଢ଼ା ॥ ଟୁଲୁଟୁ, ଏ ବୁଢ଼ାର ବି ଦିନେ ଘର ଥିଲା, ସମ୍ପର୍କ ବି ଥିଲା ଖୁବ୍ । ସବୁ ଦୂରକୁ ଠେଲି ଦେଇ ଆଗେଇ ଯାଇଥିଲି, ଧ୍ୱଂସ ହୋଇ ଯିବା ପାଇଁ କିନ୍ତୁ ଧ୍ୱଂସ ହେଲିନି ! ପୁଣି ଯେଉଁ ଲୁହା, ଗୋଡ଼, ପିତ୍ତଳରେ ହାତ ଦେଲି, ତା' ସୁନା ପାଲଟି ଗଲା, କିନ୍ତୁ ଶାନ୍ତ ପାଇଲି ନାହିଁ । ଅଶାନ୍ତ ଛାଡ଼ି ଶାନ୍ତ ପାଇଁ ଛୁଟି ଯାଉଥିଲି—କିନ୍ତୁ···
ଟୁଲୁଟୁ ॥ ଏସବୁ କ'ଣ କହୁଛ ଅଜା ?

ବୁଢ଼ା ॥ (ନିଜକୁ ସଂଯତ କରିନେଇ) ନା ନା, କିଛି ନୁହେଁ । ତୁ ମୋ ସଙ୍ଗେ ସିମିଲା ଯିବୁ ।

ଟୁଲୁଟୁ ॥ ଯିବ ଅଜା ।

ବୁଢ଼ା ॥ ତୁ ସିମିଲା ଦେଖିନୁ ?

ଟୁଲୁଟୁ ॥ ଦିଲ୍ଲୀ ଛାଡ଼ି ମୁଁ କୁଆଡ଼େ ଯାଇନି ଅଜା !

ବୁଢ଼ା ॥ ଦିଲ୍ଲୀ ଛାଡ଼ି ତୁମର ଘରଦ୍ୱାର ଆଉ କେଉଁଠି ନାହିଁ କିରେ ?

ଟୁଲୁଟୁ ॥ ତୁମେ ସିନା ଭାରି ବଡ଼ ଲୋକ ।

ବୁଢ଼ା ॥ ଟୁଲୁଟୁ—ବୋଉକୁ ଡ଼ାକିଲୁ—

ଟୁଲୁଟୁ ॥ ବୋଉ—ବୋ···

ବୁଢ଼ା ॥ ଆସିଲ ?—ଶୋଭା...ଓ । ଆସିନ, ଯା କହିବୁ ଅଜା କହିଲ, "ଆଟାଚି"ଟା ଖୋଲି ଟଙ୍କାଯାକ ତା ଆକାଉଣ୍ଟରେ ରଖିଦେବ ।

ଟୁଲୁଟୁ ॥ ତୁମ ଟଙ୍କା ଅଜା—?

ବୁଢ଼ା ॥ ମୋର ଆଉ ଟଙ୍କା କ'ଣ ହେବ; ଯା—

(ଟୁଲୁଟୁ କ'ଣ ଭାବି ଥରେ ବୁଢ଼ା ମୁହଁକୁ ଚାହିଁ ଘର ଭିତରକୁ ପଶିଗଲା । କିଛି ସମୟ ନୀରବତା ପରେ)

ବୁଢ଼ା ॥ ଟୁଲୁଟୁ, ତୁ ବି କୁଆଡ଼େ ଚାଲିଗଲୁ କିରେ ଦୁଷ୍ଟ !

ଟୁଲୁଟୁ ॥ (ଦୌଡ଼ି ଆସି ଫୁସଫୁସ କଣ୍ଠରେ) ଅଜା, ବୋଉ କାନ୍ଦୁଛି ।

ବୁଢ଼ା ॥ ବୋଉ କାନ୍ଦୁଛି ? କାହିଁକି କ'ଣ ହେଲା ?

ଟୁଲୁଟୁ ॥ ବାପା ବୋଧହୁଏ—

ବୁଢ଼ା ॥ ବାପା—ଓ...(ବୁଢ଼ାଙ୍କର ମୁଖମଣ୍ଡଳ କୁଞ୍ଚିତ ହୋଇଗଲା)

ଟୁଲୁଟୁ ॥ ଅଜା, ସତେ ମୋ ପାଇଁ ମଟରଗାଡ଼ି କିଣିଦେବ ?

ବୁଢ଼ା ॥ ଟୁଲୁଟୁ, ତୋ ବହି'ଖିଆ ସରଯାଇଛି ?

ଟୁଲୁଟୁ ॥ କାହିଁକି ଅଜା ?

ବୁଢ଼ା ॥ ଯା ପଢ଼ିବୁ ଯା—

ଟୁଲୁଟୁ ॥ କହ ଅଜା ସତେ ମତେ ମଟରଗାଡ଼ି କିଣିଦେବ ?

ବୁଢ଼ା ॥ (ହଠାତ୍ ଚିତ୍କାର କରି ଉଠିଲେ) ଏଠି ଆଡ଼୍ଡ଼ା କରନା ଟୁଲୁଟୁ... ପଢ଼ିବୁ ଯା—

ଟୁଲୁଟୁ ॥ ଅଜା ?

ବୁଢ଼ା ॥ ଯା, କହୁଛି ।

ଶୋଭା ॥ (ପଶିଆସି) ଯା, ଟୁଲୁଟୁ ପଢ଼ିବୁ ଯା—(ଟୁଲୁଟୁ ଡ଼ରି ଡ଼ରି ଭିତରକୁ ପଶିଗଲା)

ବୁଢ଼ା ॥ କଏ ?
ଶୋଭା ॥ ଶୋଭା ।
ବୁଢ଼ା ॥ ଟୁଲୁଟୁ ସ୍କୁଲରେ ଗଲାଣି ?
ଶୋଭା ॥ ହୁଁ ।
ବୁଢ଼ା ॥ ପାଖକୁ ଆଇଲୁ ମା'—
ଶୋଭା ॥ କ'ଣ ?
ବୁଢ଼ା ॥ ମୁଁ ତମ ଉପରେ ବୋଝପଣ—
ଶୋଭା ॥ ସେ କ'ଣ କହୁଛନ୍ତି, ଆପଣ ?
ବୁଢ଼ା ॥ ତୁ ଜାଣିଥିଲୁ ?
ଶୋଭା ॥ ମୁଁ ନା ତ । କଏ, କହିଲା ?
ବୁଢ଼ା ॥ ଟୁଲୁଟୁ—
ଶୋଭା ॥ ଓଃ, ଟୁଲୁଟୁ···ନା···
ବୁଢ଼ା ॥ ଡାକ୍ତର ଗାଳିଦେଲା ?
ଶୋଭା ॥ ନା ତ···

ବୁଢ଼ା ॥ ନା... ? ହଠାତ୍ ବୋଧହୁଏ ତୋ ଉପରେ ଚଢ଼ି ଉଠିଲା । କାହିଁକି ?
ଶୋଭା ॥ ମୁଁ ଜାଣେନା । କାହିଁକି ?
ବୁଢ଼ା ॥ ଏଁ, ତୁ ଜାଣୁନା କାହିଁକି...ଅଥଚ ହଠାତ୍ ତୋତେ··· । ଶୋଭା, ଶୋଭା, ଧର ମୋତେ···ମୁଣ୍ଡଟା ମୋର ବୁଲେଇ ଦେଉଛି, ଆଃ···ଆଃ···
ଶୋଭା ॥ ଏଁ, ହଠାତ୍ କ'ଣ ଆପଣଙ୍କର ହେଲା ? (ବ୍ୟତିବ୍ୟସ୍ତ ହୋଇପଡ଼ି ବୁଢ଼ାଙ୍କୁ ଧରୁଧରୁ······)
ବୁଢ଼ା ॥ ନା, କିଛି ନୁହେଁ ।
ଶୋଭା ॥ କିଛି ନୁହେଁ, ଅଥଚ ହଠାତ୍···
ବୁଢ଼ା ॥ (ଦୀର୍ଘ ନିଃଶ୍ୱାସ ପକାଇ) ଶୋଭା, ମୁଁ ଜାଣେ ତୁମମାନଙ୍କ ଉପରେ ହଠାତ୍ ଏମିତି ଚଢ଼ି ଉଠିଲେ, ତୁମେମାନେ ଜପଣ···
ଶୋଭା ॥ ନା ନା, ସେ କିଛି ନୁହେଁ······ମୋ' ଉପରେ ଚଢ଼ିବା ଏମିତି କିଛି ନୂଆ କଥା ନୁହେଁ ।
ବୁଢ଼ା ॥ ଶୋଭା···ବିନା କାରଣରେ ··· ନୂଆକଥା ନୁହେଁ ··· ଡାକ୍ତର··· ଡାକ୍ତର···! !
ତପନ ॥ (ପଶିଆସି) କ'ଣ ହେଲା ?
ବୁଢ଼ା ॥ ତୁମେ ଡାକ୍ତର, ଶୋଭାକୁ ଗାଳି ଦେଲ ?
ତପନ ॥ ମୁଁ ?

ବୁଢ଼ା ।। ତୁମେ—ଓଃ, (ହଠାତ୍ କ'ଣ ଯେମିତି ବୁଝିପାରି) ଡାକ୍ତର ମୁଁ, ହୋଟେଲରେ ରହୁଥିବା ଲୋକ । ତୁମେ ମତେ ଏ ପରିବାର ଭିତରକୁ କାହିଁକି ଆଣିଲ ?

ତପନ ।। କ'ଣ ଆପଣ ଏସବୁ କହିବାକୁ ଆରମ୍ଭ କରିଛନ୍ତି ?

ବୁଢ଼ା ।। ତୁମେ 'ନର୍ଭସ' ହୋଇଯାଉଛ ଡ଼ାକ୍ତର···ନା ନା, ମୁଁ ତୁମମାନଙ୍କୁ ଛାଡ଼ିଯିବି ନାହିଁ । ମତେ ଟିକେ ବିଛଣାକୁ ନେଇ ଯା ।

ଶୋଭା ।। ଏଇ, ହାତ ଧରନ୍ତୁ ଆସ୍ତେ—ଏପାଖରେ (ଶୋଭା ବୁଢ଼ାଙ୍କୁ ଅନ୍ୟ ଘରକୁ ନେଇଗଲେ—ଡାକ୍ତର କିଛି ବୁଝି ନ ପାରି ନିସ୍ତେଜ ହୋଇ ବସିପଡ଼ିଲେ, କିଛି ସମୟ ପରେ)

ତପନ ।। ଶୋଭା ?

ଶୋଭା ।। (ଫେରିଆସି ଠିଆ ହେଲେ—ଆଖିରେ ବିମର୍ଷ ଚାହାଣୀ)

ତପନ ।। କ'ଣ କରୁଛନ୍ତି ?

ଶୋଭା ।। ବିଛଣାରେ ଶୋଇଲେ ।

ତପନ ।। ଏ କ'ଣ ଭଲ ହେଲ, ଶୋଭା ?

ଶୋଭା ।। କ'ଣ ?

ତପନ ।। ମୁହୂର୍ତ୍ତକରେ ଧରି ନେଲି ମୋ ଭୁଲ୍···ହଠାତ୍ ତୁମ ଉପରେ ମୁଁ ଚିଡ଼ି ଉଠିଲି···ତୁମକୁ ଅପମାନ ଦେଲି, ତୁମକୁ କନ୍ଦାଇଲି । ତା' ବୋଲି କ'ଣ ତୁମେ ଜଣା ନ ଥିବା ଜଣେ ଲୋକ, ତାଙ୍କ ଆଗରେ ଏମିତି—

ଶୋଭା ।। ନା ତ, ମୁଁ କିଛି କହୁନାହିଁ; ବରଂ ମୁଁ କହୁଛି, କିଛି ହୋଇନାହିଁ । ସେସବୁ ଜାଣିଲାପରି ମୋତେ—

ତପନ ।। କ'ଣ ଜାଣିଲା ପରି ?

ଶୋଭା ।। ହଠାତ୍ ତୁମେ ମୋ' ଉପରେ ଚିଡ଼ି ଉଠିଲ; ତା'ପର ମୁଁ···

ତପନ ।। ଓଃ...(ଅନ୍ୟମନସ୍କ ହୋଇ କ'ଣ ଭାବିବାକୁ ଲାଗିଲେ)

ଶୋଭା ।। କିନ୍ତୁ, ତୁମେ ଯେ କାହିଁକି ମୋ' ଉପରେ ଏମିତି ଚିଡ଼ି ଉଠିଲ ? କ'ଣ ବା ମୁଁ କହିଲି ତୁମକୁ ? ତୁମେ ସକାଳୁ କହୁଥିଲ ରୋଗୀ ଦେଖିଯିବ । ତା'ପର ଯିବାର କିଛି ଲକ୍ଷଣ ନାହିଁ—ଯେମିତି କାହାକୁ ଅପେକ୍ଷା କରି ବସିଛ—

ତପନ ।। କାହାକୁ ଅପେକ୍ଷା କରି ବସିଛି (ପାଟିକରି) ଅରୁଣକୁ—

ଶୋଭା ।। ସେଇ କଥା ତ କହୁଥାନ୍ତି—ଏମିତି ଚିଡ଼ି ଉଠିଲ କାହିଁକି ? ଏମିତି ଯା' ତା' ଭାଷାରେ—

ତପନ ॥ (ଅଧିକ ଜୋର୍ ଗଳାରେ) ଭୁଲ୍ ହୋଇଚ, ଭୁଲ୍ ହୋଇଚ, ଶହେଥର ଭୁଲ୍ ହୋଇଚ । ଏଥର ଚୁପ୍ କର ।

ଶୋଭା ॥ ଏଇ ତ ବନା କାରଣରେ ପୁଣି ଚଢ଼ି ଉଠୁଛ । କ'ଣ ହୋଇଛି ତୁମର ?

ତପନ ॥ ଏ ବୁଢ଼ା ତୁମକୁ ମୋ କଥା, ଆମ ଘରକଥା କିଛି ପଚାରୁଥିଲେ ?

ଶୋଭା ॥ ନା ତ ।

ତପନ ॥ ଟୁଲ୍‌ଟୁକୁ ?

ଶୋଭା ॥ ପିଲାଟାକୁ କାହିଁକି ପଚାରିବେ ? ବାର ଚଉଦ ଦିନ ହେଲା ମଲାପରି ତ ଘରେ ପଡ଼ିରହିଲେ । ଆଜି ହଠାତ୍ କାହିଁକି ଯେ ଉଠି ଏମିତି ହେଉଛନ୍ତି······

ତପନ ॥ (ଚାପା ଗଳାରେ) ସେ ସମ୍ମୋହନ ଜାଣନ୍ତି···ଯାଦୁବିଦ୍ୟା, ଯାଦୁବିଦ୍ୟା ...(ବିବ୍ରତ ହୋଇପଡ଼ି) ତୁମେ ତାଙ୍କୁ ଗୋଟାଏ ହୋଟେଲରେ ନେଇ ଛାଡ଼ିଦେଇ ଆସ ।

ଶୋଭା ॥ ତୁମେ ଆଣିଚ, ତୁମେ ନେଇ ଛାଡ଼ିଦେଇ ଆସୁନା —

ତପନ ॥ ହଁ, ମୁଁ ଛାଡ଼ିଦେଇ ଆସିବି, ଆଜି ଛାଡ଼ିଦେଇ ଆସିବି । କିଏ ? ଅରୁଣ ? (ଅରୁଣ ଭିତରକୁ ପଶି ଆସିଲେ, ବୟସ ପଚିଶ ଟପିନାହିଁ । ପତଳା ଲମ୍ବା ଚେହେରା ।)

ଅରୁଣ ॥ ଟେଲିଫୋନ କରିଥିଲେ ? ମୁଁ ଟିକେ ବାହାରକୁ ଚାଲିଯାଇଥିଲି ।

ତପନ ॥ ମୁଁ ? ନା ତ । ତୁମେ, ଶୋଭା ?

ଶୋଭା ॥ ମୁଁ କେତେବେଳେ ଟେଲିଫୋନ କଲି ?

ତପନ ॥ ତେବେ ?

ଶୋଭା ॥ ଚଗଲାମି କରି କାଲେ ଟୁଲୁଟୁ !

ତପନ ॥ (ପାଟିକରି) ଟୁଲୁଟୁ !

ଟୁଲୁଟୁ ॥ (ଦୂରରୁ) କ'ଣ ?

ତପନ ॥ ଅରୁଣଙ୍କ ଘରକୁ ତୁ ଟେଲିଫୋନ କରିଥିଲୁ ?

ଟୁଲୁଟୁ ॥ (ଆସି) ହଁ, ବାପା ।

ତପନ ॥ କାହିଁକି ?

ଟୁଲୁଟୁ ॥ ଅଜା କହିଲେ ।

ତପନ ॥ (ଭ୍ରୂକୁଞ୍ଚିତ କରି) ଅଜା ?

ଟୁଲୁଟୁ ॥ ହଁ, ଅଜା କହିଲେ, ଅରୁଣଙ୍କୁ ଫୋନରେ କହିଦେ ଶୀଘ୍ର ଆସି ଆଖି ଖୋଲିଦେଇ ଯାଉ, ସେ ଏଠୁ ଚାଲିଯିବେ ।

ତପନ  ।। ଚ୍ଛଲିଗିବେ ? କୁଆଡେ ?

ଟୁଲୁଟୁ  ।। କୁଆଡେ ? ପଗ୍ଗୃର ଆସିବ ବାପା···

ତପନ  ।। ଦରକାର ନାହିଁ, ପଢ଼ିବୁ ଯା—(ଟୁଲୁଟୁ ଅପଗ୍ଗଧୀ ପର ଗ୍ଗଲଗଲା) ଅଭୁତ—(କିଛି ସମୟ ଚୁପ୍) ଅରୁଣ, ବ୍ୟାଣ୍ଡେଜ୍ ଖୋଲିବାର ସମୟ ହୋଇଯାଇଛି ?

ଅରୁଣ  ।। ସମସ୍ତ ହୋଇ ଯାଇଛି; କିନ୍ତୁ ମୋ ମତରେ ଆଉ କିଛିଦିନ ଅପେକ୍ଷା କରିବା ଭଲ, କାରଣ···ଯଦି···ଆପଣ ଠିକେ ଦେଖି ନେଇଥିଲେ···

ତପନ  ।। ମୁଁ ? ନା ଅରୁଣ, ତମେ ତ ଦେଖୁଛ, ମୁଁ ଆଉ ଅଧିକ କ'ଣ ଦେଖିବି ?

ଅରୁଣ  ।। ମୁଁ ତା' ହେଲେ ଦେଖି ଆସେ । (ସେ ଘର ଭିତରକୁ ଗ୍ଗଲଗଲେ)

ଶୋଭା  ।। ଅରୁଣ ବିଷୟରେ ତୁମର ଧାରଣା କ'ଣ ?

ତପନ  ।। ମାନେ—

ଶୋଭା  ।। ସୀମାକୁ ଯଦି ବିଜ କରେଇ ହୁଅନ୍ତା, ଅରୁଣ ଖୁବ୍ ଭଲ ପାତ୍ର ହୁଅନ୍ତେ ନାହିଁ ?

ତପନ  ।। ଅରୁଣ ? (ଅନ୍ୟମନସ୍କ ହୋଇଯାଇ) ହଁ ହଁ, ମନ୍ଦ କ'ଣ—ସତେ ତ । ଏକଥା କେବେ ମନକୁ ଆସିନାହିଁ । ସତେ, ଖୁବ ଭଲ ହୁଅନ୍ତା—ସୀମା ଅସୁ, ତୁମେ ପକା ଏ ପ୍ରସ୍ତାବଟା—
(ଉଠି ଯାଉଥିଲେ—ଦାଣ୍ଡପାଖରେ ଦରଜାପଟୁ ଭିତରକୁ ପଶି-ଆସିଲେ ସୀମା—ସୀମା ଆଧୁନିକା ତରୁଣୀ, କଥା ଓ ଭଙ୍ଗୀରେ ଅନ୍ୟକୁ ଆକର୍ଷଣ କରିବାର ସୂଚନା—ତପନ ରହିଗଲେ)

ଶୋଭା  ।। ଏଇ ତ ସୀମା ।

ସୀମା  ।। ମୁଁ ଜାଣେ, ଅପା ମତେ ଅପେକ୍ଷା କରି ବସିଥିବ ।

ଶୋଭା  ।। ଅପେକ୍ଷା କରି ବସିଥିବ ? ମାନେ···

ସୀମା  ।। ହଁ ତ, ଖବର ପଠାଇଥିଲ, ମୁଁ ଏଇଠି ଆସି ଗ୍ଗ' ଖାଇବ ।

ଶୋଭା  ।। ଖବର ପଠେଇଥିଲୁ ? କାହା ହାତରେ ?

ତପନ  ।। ଓଃ, ମୁଁ ଭୁଲିଯାଇଛି···(କଥାଟା ଯେମିତି ଆଉ ନ ଆଗେଇବ, ସେଥିଲାଗି ସିଧାସଳଖ ଶୋଭାଙ୍କ ମୁହଁକୁ ଗ୍ଗହିଁଲେ)

ଶୋଭା  ।। ମାନେ ?

ସୀମା  ।। ଦେଖିଲୁ ଅପା, ଖାଇବାକୁ ଦେବାକୁ ପଡ଼ିବ ବୋଲି କେମିତି ଭୁଲି ଯାଉଛନ୍ତି ।

ଶୋଭା  ।। ତାଙ୍କ ଉପରେ ତୁ ନିର୍ଭର ରଖିଲୁ କାହିଁକି ? ମତେ ଟେଲିଫୋନ କରି ଦେଲୁନି ?

ସୀମା ।। ମୁଁ ତ ଟେଲିଫୋନ୍ କରିଥିଲି ।

ଶୋଭା ।। କେତେବେଳେ ?

ସୀମା ।। ବର୍ତ୍ତମାନ ଠିକ୍ ଘରୁ ବାହାରିବା ଆଗରୁ ।

ତପନ ।। ତୁମେ ଟେଲିଫୋନ୍‌ରେ କହିଲ—ମୁଁ ଭାବିଲି ଏମିତି ଅନ୍ଧାରେ ଖାଲି ।

ଶୋଭା ।। କିନ୍ତୁ, ଏବେ କହୁଥିଲ ଯେ ଭୁଲିଯାଇଛ ବୋଲି—

ସୀମା ।। ତୁମେ ସିନା ଡାକ୍ତର, ଅପା କିନ୍ତୁ ଓକିଲ । କେଉଁ କଥାଟି ଠିକ୍ କୁହ— ଭୁଲିଯାଇଥିଲ, ନା କହିଲ ନାହିଁ ।

ତପନ ।। ଦୁଇଟି ଭିତରୁ ଯାହାର ଯେଉଁଟି ସୁବିଧା ଧରିନିଅ । (ଶୋଭା ଉଠି ଛିଡା ହେଲେ) ଆରେ, ତୁମେ ଯେ ଉଠିଯାଉଛ, ଶୋଭା !

ଶୋଭା ।। ଚା' ଟିକେ କରି ନେଇଆସେ ।

ତପନ ।। କରିବ ଯେବେ ମୋ ପାଇଁ ଅଧିକା କପେ କରିଦିଅ, ଅଧିକା ପରିଶ୍ରମ ତ ପଡିବ ନାହିଁ ।

ସୀମା ।। ଡାକ୍ତର ଲୋକ ପରା, କୁଆଡେ଼ ଖିଆପିଆରେ ଖୁବ୍ ନିୟମିତ ।

ତପନ ।। କଥାଟା ଭୁଲ୍ ନୁହେଁ, ଆଉ ତା ସାଙ୍ଗେ ବି ଏକଥା ଭୁଲ୍ ନୁହେଁ ଯେ, ପ୍ରତ୍ୟେକ ନିୟମର ବ୍ୟତିକ୍ରମ ରହିଛି ।

ଶୋଭା ।। ନିୟମ···ବ୍ୟତିକ୍ରମ । ବେଶ୍ ଗଣିତ ଚର୍ଚ୍ଚା ଆରମ୍ଭ ହୋଇଗଲା । ମୁଁ ଚା'ଟା ଆଗ ନେଇଆସେ । (ସେ ଚାଲିଗଲେ)

ସୀମା ।। ଅପା ଆଗରେ ତୁମେ କାହିଁକି କହିଲ ଯେ, ପ୍ରତ୍ୟେକ ନିୟମର···

ତପନ ।। (ଓଠ ଚାପି ଚାପି ହସି ହସି) ମୁଁ ବି ତ ହୋଇପାରେ ।

ସୀମା ।। ବଡ଼ ଅଦ୍ଭୁତ, ତୁମେ ।

ତପନ ।। ବାସ୍ତବିକ୍, ଅନେକ ସମୟରେ ମୁଁ ନିଜେ ଅନୁଭବ କରେ ଯେ, ମୁଁ ଅଦ୍ଭୁତ । ବେଳେ ବେଳେ ଅପ୍ରତ୍ୟାଶିତ ଭାବେ ଏମିତି ଏକ ଅପ୍ରାତ୍ୟାଶିତ ମୁହୂର୍ତ୍ତି ଆସେ···ଯେତେବେଳେ ମୁଁ ସବୁ ଭୁଲିଯାଏ ।

ସୀମା ।। ତୁମେ କେମିତି ଅପାକୁ କହିଲ ନାହିଁ ଯେ, ଆସିବାକୁ ମୁଁ ଟେଲିଫୋନ୍ କରିଚି ବୋଲି ?

ତପନ ।। ତୁମ ଆସିବାର ଆନନ୍ଦରେ ମୁଁ ଭୁଲିଯାଇଚି ?

ସୀମା ।। ଛି, ସେ କ'ଣ କହୁଛ ? ଅପା ଶୁଣିଲେ କ'ଣ ଭାବିବ ।

ତପନ ।। ଅପା ଭାବିବ ? (ସୀମାଙ୍କ ଆଗରେ ଛିଡ଼ା ହୋଇ) ସୀମା, ତୁମେ ଏକଥା କହିପାରିଲ ? ତା' ହେଲେ ଅପା ଭୟରେ···

ସୀମା ।। ତା'ମାନେ ତୁମେ......ମୁଁ ତେବେ ଏଠିକି ଆଉ ଆସିବି ନାହିଁ ।

(ଉଠି ଛିଡ଼ା ହେଲେ)

ତପନ ।। ଅରେ, ଉଠିଯାଉଛ କୁଆଡେ ? ଏଇ ଯେ ତମ ପାଇଁ......

(ଟ୍ରେ ଧରି ପଶିଆସିଲେ ଶୋଭା)

ଶୋଭା ।। ସୀମା··· (ସୀମା ଅଟକିଗଲା)

ସୀମା ।। (ଟ୍ରେ ତପନ୍‌ଠାଏ ଧରିନେଇ) ଅପା, କଲ୍ପନା, ଗୋଟାଏ ଆଡେ ବୁଲି ଆସିବୁ ।

ଶୋଭା ।। କୁଆଡେ ?

ସୀମା ।। ଆମ କଲେଜରେ ଗୋଟାଏ ସଂଗୀତ ପ୍ରତିଯୋଗିତା ହେଉଛି, କଲ୍ପନା ଶୁଣି ଆସିବୁ ।

ତପନ ।। କଲ୍ପନା ଶୋଭା ।

ଶୋଭା ।। ତୁମେ ଯା—

ତପନ ।। ମୁଁ ତ ଯିବି—କିନ୍ତୁ ତୁମେ···(କଥାର ଗତିଟା ବଦଳାଇବାର ଚେଷ୍ଟା କରି) ଅରେ ଶୋଭା, ସୀମାକୁ କ'ଣ ପଚାରିବ ବୋଲି କହୁଥିଲ ପରା ?

ସୀମା ।। କ'ଣ ?

ଶୋଭା ।। ତୁମେ ପଚାରୁନା ?

ସୀମା ।। (ଉଦ୍‌ବିଗ୍ନ ହୋଇ) କ'ଣ ?

ତପନ ।। କ'ଣ ଦେବ କହ ?

ସୀମା ।। କାହିଁକି ?

ତପନ ।। ତମପାଇଁ ଏତେ ଯୋଗାଡ଼ ଆମେ କରୁଚୁ, ତମର କ'ଣ ନା କାହିଁକି ?

ସୀମା ।। କି ଯୋଗାଡ଼ ?

ତପନ ।। ବର...(ତପନ ହୋ ହୋ ହୋଇ ହସିଉଠିଲେ—ଏ ହସ ଭିତରେ ଆନନ୍ଦ ଅପେକ୍ଷା ବ୍ୟଥା ଅଧିକ)

ସୀମା ।। ବର...କହୁଛ, ଲଗାନା ମୋ ସଙ୍ଗରେ । ଟ୍ରେ ପକେଇ ସୁଟ୍ ଖରାପ କରି ଦେବି ।

ତପନ ।। ଅରେ, ମୋ ଦୋଷ କେଉଁଠି ହେଲା ? ତୁମ ଅପା ଠିକ୍ କରିଛନ୍ତି, ମୁଁ କ'ଣ କରିବି ?

ସୀମା ।। ଅପା !

(ଏତେବେଳେ ଯାଏଁ ଯାହା ପରିହାସ ବୋଲି ଭାବୁଥିଲା—ତାକୁ ବାସ୍ତବ ବୋଲି ଜାଣିପାରି ଚିତ୍କାର କରି ଉଠିଲା—ଆଖିରେ ପ୍ରଶ୍ନବାଚକ)

ଶୋଭା ।। ଅରୁଣ ବିଷୟରେ ପ୍ରସ୍ତାବ ପକାଇଲେ କେମିତି ହୁଅନ୍ତା ?

ସୀମା ।। ଅରୁଣ ?

ଶୋଭା ।। ସ୍ୱାଙ୍କ ଆସିଷ୍ଟାଣ୍ଟ—

ସୀମା ।। ମୋର ଆଉ ବାହାହେବାର ବୟସ ଅଛି, ଅପା ?

ତପନ ।। ଆରେ, ଅନ୍ୟ କେହି ନ କହନ୍ତୁ, ତୁମେ ନିଜକୁ ନିଜେ ବୁଢ଼ୀ ବୋଲି ମନେ କଲଣି ନା କ'ଣ ?

ସୀମା ।। ଆଉ, ମୋ ପାଇଁ ତୁମେ ଆଉ ଏତେ ଦାର୍ଶନିକ ହଅନା—

ତପନ ।। ତୁମେ ଆଜିକାଲି ଏମିତି ଗୋଟାଏ ପ୍ରକାର ଚାହାଁଉଛ, ବାହା ହେବନି, ଖାଲି ସ୍ୱାଧୀନ ଭାବେ ବୁଲିବ ନା ?

ସୀମା ।। (ହସି ହସି) ତୁମର ଈର୍ଷା ହେଉଛି କି ?

ତପନ ।। ହେଲେ ବା ଉପାୟ କ'ଣ ?

ଶୋଭା ।। କ'ଣ ସୀମା, ତା' ହେଲେ...ସତେ ସତେ ପ୍ରସ୍ତାବଟା—

ସୀମା ।। ନା ଅପା, ଆଉ—ଭାବିଲି ମିଛରେ ତୁମେ ମୋ' ପାଇଁ ଝିନ୍‌ଝଟରେ ଘାଣ୍ଟି ହେବ ।

ଅରୁଣ ।। (ପଶିଆସି) କ'ଣ ହୋଇଛି ବୁଢ଼ାଙ୍କର, ଅଜା ?

ତପନ ।। ଭଲ କରି ତାଙ୍କୁ ଦେଖିଲ ଅରୁଣ ?

ଅରୁଣ ।। କ'ଣ ହେଉଛି ତାଙ୍କର ଆଉ ? ଖାଲି ମତେ ଲଗାଇଛନ୍ତି, 'ପଟିଟା ଖୋଲିଦିଅ, ମତେ ଅଣନିଃଶ୍ୱାସୀ ଲାଗୁଛି, ପଟିଟା ଖୋଲିଦିଅ ।'

ତପନ ।। ଖୋଲିଦେଲ ?

ଅରୁଣ ।। ଆଉ କିଛିଦିନ ଅପେକ୍ଷା କଲେ ଭଲ ହେବ ।

ଶୋଭା ।। ଅନେକ ଦିନ ଏମିତି ରହିଲେଣି, ନିଶ୍ଚୟ ଖରାପ ଲାଗୁଥିବ ।

ଅରୁଣ ।। ଆପଣ ତାଙ୍କୁ ଟିକେ ବାହାରେ କୁଆଡ଼େ ବୁଲାଇ ଆଣି ପାରନ୍ତେ, ଅନ୍ତତଃ ମନଟା ପ୍ରଫୁଲ୍ଲ ହେବ ।

ଶୋଭା ।। (ତପନଙ୍କୁ ଲକ୍ଷ୍ୟ କରି) ତୁମେ ସବୁ ମ୍ୟୁଜିକ୍ କମ୍ପିଟିସନକୁ ଯିବ ? ତାଙ୍କୁ ଟିକେ ନେଇ ଯାଆନ୍ତ...

ତପନ ।। ତାଙ୍କୁ ? ଦେଖ ଶୋଭା, ସେ ଯେ ସଙ୍ଗୀତକୁ ଭଲ ପା'ନ୍ତି, ସେକଥା କିଏ ଜାଣେ ?

ଶୋଭା ।। ନା ନା, ତୁମେ ତାଙ୍କୁ ଟିକିଏ ବୁଲାଇ ଆଣ । ତାଙ୍କର ପରିବର୍ତ୍ତନ ଦରକାର । ସେ ଯିଏ ହୋଇଥାନ୍ତୁ, ଅନ୍ତତଃ ଯେତେଦିନ ଏଠି ଅଛନ୍ତି ସବୁ ସହି ତ ନେବାକୁ ହେବ । ତୁମେ ପଛେ ନ ନେଲେ ନ ନିଅ ।

ତାଙ୍କୁ ଆଣି ମୁଁ ସୀମା ଦାୟିତ୍ୱରେ ଛାଡ଼ିଦେଇ ଯାଉଛି । (ଭିତରକୁ ପଶିଗଲେ)

ତପନ ॥ ଡମ ଅପାଙ୍କର ବିଶେଷତ୍ୱ ହେଉଛି, ଯାହା ବୁଝିଁ ଥିବେ ସେଇଆ ।

ସୀମା ॥ ବେଶ୍, ଭଲ ହେବ, ଗ୍ଲଲନ୍ତୁ ନା ତାଙ୍କ ଦାୟିତ୍ୱ ମୁଁ ନେଉଛି । ତୁମେ ବ୍ୟସ୍ତ ହୁଅନା

ଅରୁଣ ॥ ମୁଁ ଆସେ ତେବେ । (ଅରୁଣ ଯାଉଥିଲେ)

ଶୋଭା ॥ (ଦୂରରୁ) ଯିବନି ଅରୁଣ ? କଥା ଅଛି । (ଅରୁଣ ଅଟକି ଗଲେ)

ତପନ ॥ ଅରୁଣ, ମୋର ଯଦି ଡାକ୍ତରଖାନା ଯିବାର ଡେରି ହୋଇଯାଏ...

ଅରୁଣ ॥ ମୁଁ ରୋଗୀମାନଙ୍କୁ ଦେଖି ନେଇଥିବ ।

ସୀମା ॥ ଯଦି ମୋଟେ ନ ଯାଅ···

ତପନ ॥ ଗୋଟାଏ ଦିନର କାମ ଚଲାଇ ନେବା ପାଇଁ ଅରୁଣ ଅସମର୍ଥ ନୁହେଁ ।

ସୀମା ॥ ମୁଁ ତ ସେ କଥା ମନା କରୁନି, ତେବେ ଡାକ୍ତର ହୋଇ ସଙ୍ଗୀତରେ ଯେ ତୁମର ଏତେ ଆଗ୍ରହ···ପୁଣି ତା' ପାଇଁ ଡାକ୍ତରଖାନାକୁ ଯିବାର ଡେରି ହୋଇଯିବ...

ତପନ ॥ ସୀମା...ତୁମେ ଦୁଷ୍ଟାମୀ କରୁନା ତ ସୀମା (ବୁଢ଼ାଙ୍କୁ ଧରି ଶୋଭା ପଶି ଆସିଲେ)

ବୁଢ଼ା ॥ ଡାକ୍ତର—ମନ୍ଦ ରୋମାଣ୍ଟିକ୍ ହେବନି—ଏମିତି ଅବସ୍ଥାରେ—

ସୀମା ॥ (ଶୋଭାଙ୍କୁ ସାହାଯ୍ୟ କରିବାକୁ ଯାଇ ବୁଢ଼ାଙ୍କୁ ଧରି ପକାଇଲେ)

ବୁଢ଼ା ॥ କିଏ ?

ତପନ ॥ ସୀମା···

ଶୋଭା ॥ ଅପରିଙ୍କୁ ମ୍ୟୁଜିକ୍ କନ୍‌ଫରେନ୍‌ସକୁ ନେଇଯିବ ।

ବୁଢ଼ା ॥ ଓଃ ! ତୁମେ ଯିବନି ଶୋଭା !

ଶୋଭା ॥ ନା—କାମ ଅଛି ।

ବୁଢ଼ା ॥ ଓଃ—(କିଛି ସମୟ ନୀରବତା ପରେ) କେତେଦୂର ?

ସୀମା ॥ ଆରେ, ଦେଖୁଛନା, ଏଇଠି ଅମର ଡେରି ହୋଇଗଲାଣି ।

ତପନ ॥ ଡେରି ହୋଇଗଲାଣି ? ଗ୍ଲଲ ସୀମା (ଉଠି ଛିଡ଼ାହେଲେ) ଆଉ କେହି ଯଦି ମୋ ପାଖକୁ ରୋଗୀ ଆସେ, ତାକୁ ଅରୁଣ ପାଖକୁ ପଠେଇ ଦେବ ।

ଶୋଭା ॥ ଯେଉଁ ରୋଗୀ ପାଖକୁ ସକାଳୁ ଯିବାର ଥିଲା ?

ତପନ ॥ ମୁଁ ତାକୁ ବାଟରେ ଦେଖିଦେଇ ଯିବି ।

ସୀମା ॥ ଆରେ ଆପନା, କେତେ ଗପୁଛ । ହଁ, ଆସ୍ତେ ଆସ୍ତେ ଗୋଡ଼ ପକାନ୍ତୁ— (ସୀମା ବୁଢ଼ାଙ୍କୁ ଧରି ପଦାକୁ ନେଉଥିଲେ)

ତପନ ॥ ଅରୁଣ, ଯଦି ଡ୍ରେସ ହୋଇଯାଏ, ଚଲାଇ ନେବ । (ଅରୁଣ ଓ ଶୋଭାଙ୍କୁ ଛାଡ଼ି ଅନ୍ୟମାନେ ଚାଲିଗଲେ)

ଶୋଭା ॥ ଅରୁଣ, ତୁମକୁ ବୁଢ଼ା କଣ କହୁଥିଲେ କି ?

ଅରୁଣ ॥ କ'ଣ ?

ଶୋଭା ॥ ଆମ ଘର କଥା ?

ଅରୁଣ ॥ ନା ତ ।

ଶୋଭା ॥ ତାଙ୍କ ନିଜ କଥା ?

ଅରୁଣ ॥ ଅନେକ ଥର ପଚାରିଛି, ସେ କେବେ କିଛି କହନ୍ତି ନାହିଁ । ସାମାନ୍ୟ ଟିକେ ହସି କଥାଟା ଉଡ଼ାଇ ଦିଅନ୍ତି । ଆଜି କିନ୍ତୁ…

ଶୋଭା ॥ କ'ଣ ଆଜି କହୁଥିଲେ ?

ଅରୁଣ ॥ ଆଜି ହଠାତ୍ କାହିଁକି କହିବାକୁ ଆରମ୍ଭ କଲେ ଯେ—ଏ ସଂସାରରେ ସେ ବଡ଼ ନିଃସଙ୍ଗ । ତାଙ୍କର କେହି ନାହାନ୍ତି—ପ୍ରଚୁର ସମ୍ପତ୍ତିର ସେ ଅଧିକାରୀ ।

ଶୋଭା ॥ କେହି ନାହାନ୍ତି ?

ଅରୁଣ ॥ ବଡ଼ କରୁଣ ଭାବେ କହିଲେ, ସମସ୍ତଙ୍କୁ ସେ ଗୋଟି ଗୋଟି କରି ହରାଇଛନ୍ତି ।

ଶୋଭା ॥ ଛି ଛି, ବଡ଼ ଦୁଃଖୀ ବିଚରା—ସେଥିପାଇଁ…

ଅରୁଣ ॥ ସେ କହିଲେ ଗୁଡ଼ିବାର ଓ ପାଇବାର ସଂଗ୍ରାମ ଧ୍ୱଜରେ ସେ ନିଜର ଲୋକଙ୍କୁ ଗୋଟି ଗୋଟି କରି ଯେତିକି ହରାଇଛନ୍ତି, ଠିକ୍ ସେଇ ଅନୁପାତରେ ଗୋଟିକ ପରେ ଗୋଟିଏ ସମ୍ପତ୍ତିର ଅଧିକାରୀ ହୋଇ ପାରିଛନ୍ତି । ଏଥର ଆକ୍ସିଡେଣ୍ଟରେ ଜୀବନର ଗତିଚକ ତାଙ୍କର ଘୂରି ଯାଇଛି । ଅଗାଧ ସମ୍ପତ୍ତିକୁ ଛାଡ଼ି କରି ସେ ପୁଣି ମଣିଷ ଭିତରେ ସ୍ନେହ-ମମତାର ଡୋର ବାନ୍ଧି ବଞ୍ଚି ରହିବାକୁ ଇଚ୍ଛା କରନ୍ତି । ସେ ଏଠୁ ଅନ୍ୟ କୁଆଡ଼େ ଯିବାକୁ ଚାହାନ୍ତି ନାହିଁ ।

ଶୋଭା ॥ ଅନ୍ୟ କୁଆଡେ ଯିବାକୁ ଚାହାନ୍ତି ନାହିଁ ?

ଅରୁଣ ॥ ସେ କହିଲେ, 'କେଉଁଟା ମଣିଷର ଘର, କେଉଁଟା ତା'ର ଘର ନୁହେଁ, କିଏ ତା'ର ଆପଣାର, କିଏ ତା'ର ଆପଣାର ନୁହେଁ—ତା'ର ବିଚାର ନିର୍ଭର କରେ, ଏକ ମାନସିକ ପ୍ରତିକ୍ରିୟା ଉପରେ । ମଣିଷ ଯେତେବେଳେ ଆପଣାକୁ ପର କରି ପାରୁଛି, ସେତେବେଳେ

ଘରକୁ ଆପଣାର କରିବା କିଛି ବଡ଼ କଥା ନୁହେଁ । ଏଇ ଜାଗାକୁ
ମୋର ଘର—ଏମାନଙ୍କୁ ମୋର ନିଜର ବୋଲି ଧରି ନେଇଛି ।'

ଶୋଭା ॥ (ଆତଙ୍କିତ ଦୃଷ୍ଟିରେ) କିନ୍ତୁ ଏ ସେ କହୁଥିଲେ—

ଅରୁଣ ॥ କ'ଣ ?

ଶୋଭା ॥ ଗୋଟାଏ ହୋଟେଲକୁ ପଠାଇ ଦେବାକୁ ।

ଅରୁଣ ॥ ହୋଟେଲକୁ ?

ଶୋଭା ॥ ସ୍ୱାଙ୍କର ଢଙ୍ଗ କ'ଣ ଜାଣିନା ! ହଠାତ୍ ମନ ହେଲା, ଡାକ୍ତରଖାନାରୁ
ଏଠିକି ନେଇଆସିଲେ । ସେମିତ ମନହୋଉଛି···।

(ବାହାରେ ମଟରଗାଡ଼ି ଆସି ଅଟକିଯିବାର ଶବ୍ଦ ହେଲା)

ଶୋଭା ॥ ପୁଣି କିଏ ଆସିଲା ?

ଅରୁଣ ॥ (ବାହାରକୁ ଅନାଇ) ଗାଡ଼ି ଫେରିଆସିଲା ନା କ'ଣ ? ଏଇ ତ
ଡ୍ରାଇଭର କ'ଣ ବୁଢ଼ାଙ୍କୁ ଧରି ସ୍ୱାଡେ ଆସୁଛି ।

ଶୋଭା ॥ କ'ଣ ହେଲା, ବାପୁ ?

(ବୁଢ଼ାଙ୍କୁ ଧରି ଡ୍ରାଇଭର ବାପୁ, ଘର ଭିତରେ ପଶିଲା—ବୁଢ଼ାଙ୍କ
ମୁହଁ ଅସ୍ୱାଭାବିକ ଭାବେ ଗମ୍ଭୀର)

ବାପୁ ॥ ବୁଢ଼ାବାବୁ ବାଟରୁ ଫେରି ଆସିବାକୁ କହିଲେ ।

ଶୋଭା ॥ ବାବୁ ?

ବାପୁ ॥ ସେମାନେ ଗୋଟାଏ ଟାକ୍ସି ଭଡ଼ା କରି ଚାଲିଗଲେ (ବାପୁ ବାହାରିଗଲା)

ବୁଢ଼ା ॥ ଶୋଭା ! (କଣ୍ଠରେ ଦୁଃଖ ଓ ଆବେଗର ଭଙ୍ଗୀ)

ଶୋଭା ॥ ଆପଣ ଫେରିଆସିଲେ କାହିଁକି ?

ବୁଢ଼ା ॥ ଆଉ ଏଠି କିଏ ଅଛି, ଶୋଭା ;

ଶୋଭା ॥ ଅରୁଣ ଅଛନ୍ତି ।

ବୁଢ଼ା ॥ ତୁମେ ଯାଇନା ଅରୁଣ ?

ଅରୁଣ ॥ ଆପଣ ବାହାରୁ ଟିକେ ବୁଲି ଆସିଥିଲେ, ଭଲ ହୋଇଥାନ୍ତା—
ଅନ୍ତତଃ ମନ ଉପରେ ଆପଙ୍କର—

ବୁଢ଼ା ॥ ଅରୁଣ ତୁମେ ଅନେକ ସମସ୍ତ ଏଠି ରହିଛ···ତୁମେ ଆସ···
ଶୋଭାଙ୍କ ସହିତ ମୋର କଥାଅଛି ।

(ଏ ହେକଠୋକ୍ କଥାରେ ଶୋଭା ବିଚଳିତା ହୋଇପଡ଼ିଲେ)

ବୁଢ଼ା ॥ କିଛି ମନେ କରିବ ନାହିଁ, ଅରୁଣ—

ଅରୁଣ ।। (ଯାଉ ଯାଉ) ନା ନା, ମନେ କରିବାର କ'ଣ ଅଛି ?

(ସେ ଚାଲିଗଲେ)

ଶୋଭା ।। (ବୁଢ଼ାଙ୍କ ପାଖକୁ ଯାଇ ତାଙ୍କ ମୁଣ୍ଡ ଉପରେ ହାତ ରଖି) କ'ଣ ହେଲ ?

ବୁଢ଼ା ।। ସୀମା ତୁମର କ'ଣ ହୁଏ, ଶୋଭା !

ଶୋଭା ।। ସମ୍ପର୍କୀୟା ଭଉଣୀ—

ବୁଢ଼ା ।। କ'ଣ କରେ ?

ଶୋଭା ।। ଓକ୍ ଟରେଟ୍ ଡ଼ିଗ୍ରୀ ପାଇଁ ପଢ଼ାପଢ଼ି କରୁଛି ।

ବୁଢ଼ା ।। ଘରେ ତା'ର କିଏ କିଏ ଅଛନ୍ତି ?

ଶୋଭା ।। ସମସ୍ତେ । ବାପ-ମା'···ଭାଇ, ଭଉଣୀ ।

ବୁଢ଼ା ।। ସ୍ୱାମୀ ?

ଶୋଭା ।। ଅନେକ ଚେଷ୍ଟା କରିସଲଣି ବନ୍ଧ ହେବାକୁ, ତା'ର ଏକା 'ନାହିଁ' ।

ବୁଢ଼ା ।। ଓଃ ! ତପନ ସହିତ ତା'ର ସମ୍ପର୍କ କ'ଣ ?

ଶୋଭା ।। ଏ କ'ଣ ଆପଣ କହୁଛନ୍ତି ?

ବୁଢ଼ା ।। ତୁମେ କେବେ ସେମାନଙ୍କୁ ସନ୍ଦେହ କରିଛ ?

ଶୋଭା ।। ଛି, ଏ କ'ଣ କହୁଛନ୍ତି ଆପଣ ?

ବୁଢ଼ା ।। ଓଃ···ଶୋଭା ମତେ ଟିକିଏ ବିଛଣାକୁ ନେଇଚାଲ । ଭାରି କ୍ଳାନ୍ତ ଅନୁଭବ କରୁଛି ।

ବୁଢ଼ା ।। ଟୁଲୁଟ କୁଆଡ଼େ ଗଲା ?

ଶୋଭା ।। ପଢ଼ୁଛି ।

ବୁଢ଼ା ।। ଟୁଲୁଟିକୁ ମୋ' ପାଖରେ ଗ୍ରହିଦେଇ ଯାଅ—ଟୁଲୁଟିକୁ ମୁଁ···ମତେ ଧର ଶୋଭା, ମୁଣ୍ଡଟା ମୋର—ଧର ଶୋଭା (ଶୋଭା ବୁଢ଼ାଙ୍କୁ ଧରି ଅନ୍ୟ ଘରକୁ ନେଇଗଲେ—ବୁଢ଼ା ଟଳ ଟଳ ହୋଇ ଚାଲୁଥାନ୍ତି)



## ଦ୍ୱିତୀୟ ଦୃଶ୍ୟ

[ସେଇଦିନ ସନ୍ଧ୍ୟା, ଘର ଅନ୍ଧାର···ଅନ୍ଧାର ଭିତରେ ଟୁଲୁଟୁ ଚଦର ଖଣ୍ଡେ ଘୋଷିହୋଇ ଗୋଟାଏ ଖାଉଟରେ ପଡ଼ିଛି ! ବୁଢ଼ା ପଶିଆସିଲେ—ଆଖିରେ ବ୍ୟାଣ୍ଡେଜ ନାହିଁ]

ବୁଢ଼ା ॥ ଟୁଲୁଟୁ ଟୁଲୁଟୁ, ସାରା ଦିନଟାସାକ ମୁଁ ଖୋଜୁଛି ତତେ । କୁଆଡ଼େ ମତେ ଛାଡ଼ି ଚାଲିଗଲୁ···ଦେଖିଲୁ···ଡାକ୍ତର ଆଖିର ପଟିଟା ଖୋଲିବାକୁ ସାହସ କଲା ନାହିଁ । ମୁଁ କେମିତି...,ଖୋଲି ଦେଇଛି—(ଟୁଲୁଟୁ ଉଁ ଉଁ ହୋଇ ଛଟପଟ ହେଉଥିଲା—ସେଇ ଶବ୍ଦ ଶୁଣି) ତୁ କାନ୍ଦୁଛୁ କିରେ—ଦେଖିଲୁ, ମୁଁ କେମିତି ସବୁ ଦେଖିପାରୁଛି···ଏ ଘର ଏମିତି ଅନ୍ଧାର କରିଛୁ କାହିଁକି—ସୁଇଚ, କେଉଁ ପାଖରେ ?

ଟୁଲୁଟୁ ॥ ସେଇ କାନ୍ଥରେ, ହାତ ମାର, ଅଜା—

(ବୁଢ଼ା ସୁଇଚ୍ ଟିପିଲେ, ଆଲୁଅ ଜଳିଉଠିଲା)

ବୁଢ଼ା ॥ କିରେ, ସବୁବେଳେ ଏମିତି ନିସ୍ତେଜ ହୋଇପଡ଼ିଛୁ କାହିଁକି ? (ନିଜେ ଟୁଲୁଟୁକୁ ଧରିବାକୁ ଯାଇ) ଦେଖି, କେମିତି ଜବାନ ଟୋକା ତୁ ଦେଖେ—ଏଁ, କ'ଣ ହେଲା ? ଦେହ କେମିତି ଖଇ ଫୁଟିଲା ପରି ତାତିଛି—ଏଠି ଏମିତି ଅନ୍ଧାର ଘରଟାରେ—

ଟୁଲୁଟୁ ॥ ମତେ ଜର, ଅଜା !

ବୁଢ଼ା ॥ (ଚିତ୍କାର କରି ଉଠିଲେ) ଜର । ସେଇଥିପାଇଁ ସାରା ଦ୍ୱିପ୍ରହରଟା ମୁଁ ତତେ ଡାକୁଛି—କେହି ମତେ କିଛି ନ କହି ଚୁପ୍‌ହୋଇ ରହିଛନ୍ତି । ଟୁଲୁଟୁ, ଭାରି କଷ୍ଟ ହେଉଛି ନା ? ଦେଲୁ, ମୋ କୋଡ଼ରେ ମୁଣ୍ଡ ଦେଲୁ । ଆଲୁଅ ଭଲ ଲାଗୁନି କିରେ, ଲିଭେଇ ଦେବି ?

ଟୁଲୁଟୁ ॥ ନା, ଥାଉ, ଅଜା—

ବୁଢ଼ା ॥ (ବୁଢ଼ା ଟୁଲୁଟୁ ମୁଣ୍ଡ ଆଉଁଷି) ଶୋଭା, ଶୋଭା !

ଶୋଭା ॥ (ପଶିଆସି) ଆପଣ ? ଏଁ, ଆଖିର ପଟିଟା ?

ବୁଢ଼ା ॥ ଖୋଲଦେଲ ଶୋଭା ! ସାରା ଖବରକାଗଜର ଆନ୍ଦୋଳନ ପରେ ଟୁଲୁଟୁକୁ ଦେଖିବାର ଇଚ୍ଛା ଏତେ ପ୍ରବଳ ହେଲା ଯେ, ବ୍ୟାଣ୍ଡେଜ୍ ଖୋଲଦେବା ଛଡ଼ା ଉପାୟ ନ ଥିଲା । ଗୋଟାଏ 'ଶବ୍ଦ'—ପଟିଟା ଖୋଲଦେବା ପରେ ଟୁଲୁଟୁକୁ ଦେଖିବା ପାଇଁ ମୁଁ ସିଧା ଏଠିକି ଆସିଛୁ; କିନ୍ତୁ ଟୁଲୁଟୁ ଯେ ଜରରେ—ଡାକ୍ତର କାହିଁ ?

ଶୋଭା ॥ ଘରେ ଥିଲେ, ଏଇ ଅଳ୍ପ ସମୟ ହେଲା କୁଆଡ଼େ—

ବୁଢ଼ା ॥ ଟୁଲୁଟୁର ଜର କଥା ?

ଶୋଭା ॥ ଜାଣନ୍ତି ।

ବୁଢ଼ା ॥ ବାହାରକୁ ବୁଲିଗଲ, ସଞ୍ଜବେଳେ ?

ଶୋଭା ॥ ଟୁଲୁଟୁକୁ ଅନେକ ଦିନ ହେଲା ଜର ହୋଇ ନ ଥିଲା । ପ୍ରଥମେ କ ତା ଦେହ କଥା ଶୁଣି ବିଶ୍ୱାସ କଲେ ନାହିଁ । ତା'ପର ଥର୍ମୋମିଟର ନେଇ ଦେଖାଇବାରୁ—

ବୁଢ଼ା ॥ ଓ ! କୁଆଡ଼େ ବୁଲିଗଲ, ତୁ ଜାଣିଛୁ ?

ଶୋଭା ॥ ଟୁଲୁଟୁ ଦେହରେ ତାତମାନ ଦେଖିବା ପରେ ତାଙ୍କ ମୁହଁ ଏତେ ଗମ୍ଭୀର ହୋଇ ଉଠିଲା ଯେ, ମୁଁ ପ୍ରଶ୍ନଟିଏ ପଚାରି ପାରିଲି ନାହିଁ । ସେ ବ ତରବର କଣ କୋଟ୍‌ଟା ଗଳେଇ ଦେଇ—

ବୁଢ଼ା ॥ କୁଆଡ଼େ, ଅନୁମାନ ?

ଶୋଭା ॥ ନିଶ୍ଚୟ କିଛି ଔଷଧ କିଣିବାକୁ ବାହାରଗଲେ—

ବୁଢ଼ା ॥ ଔଷଧ ପାଇଁ...? ଡ୍ରାଇଭର ଥିଲା; ଟେଲିଫୋନ ଜରିଆରେ ପାଇଥାନ୍ତା ।

ଶୋଭା ॥ ଟୁଲୁଟୁ କଥା ନା ! ସେ ବୋଧହୁଏ ଠିକ୍ କରିପାରି ନାହାନ୍ତି, କ'ଣ କରିବାକୁ ହେବ—ଅରୁଣ ପାଖକୁ ବୋଧହୁଏ—

ବୁଢ଼ା ॥ ଅରୁଣ ପାଖକୁ ? ହୁଁ, (ଦୀର୍ଘଶ୍ୱାସ ମାରି) ତୋ' ଅନୁମାନ ଠିକ୍ ବ ହୋଇପାରେ । ଶୋଭା ଜାଣୁ ତୁ ?

ଶୋଭା ॥ କ'ଣ ?

ବୁଢ଼ା ॥ ନା, ଥାଉ । ହୁଏ ତ, ମୁଁ ବ ଭୁଲ୍ ହୋଇପାରେ ।

ଶୋଭା ॥ କ'ଣ ?

ବୁଢ଼ା ॥ ନା ନା, କିଛି ନୁହେଁ । ମତେ ବ ବଡ଼ ଅବଶ ଲାଗୁଚ ଶୋଭା, ବିଛଣାରେ ଯାଇ ଟିକେ ବିଶ୍ରାମ ନିଏ—(ନିଜ ଭିତରେ ଅନୁଭବ କରୁଥିବା ଯନ୍ତ୍ରଣାରେ ଛଟପଟ ହୋଇପଡ଼ିଲେ) ଆଃ...ଶୋଭା, ତୁ

ଟୁଲୁଟୁକୁ ଛାଡ଼ ଯା' ନା—ମୁଁ ଟିକେ ବିଶ୍ରାମ ନିଏ— (ବୁଢ଼ା ଉଠି ଚାଲିଗଲେ)

ଟୁଲୁଟୁ ।। ବୋଉ !
ଶୋଭା ।। ଶୋଷ ହଉଚ ?
ଟୁଲୁଟୁ ।। ବାପା କୁଆଡ଼େ ଗଲେ ? ମୋ ଗ୍ରନ୍ଥରେ ଖୁବ କଷ୍ଟ ହେଉଛି ।
ଶୋଭା ।। (ଆତଙ୍କିତ ହୋଇ) ଏଁ, ଗ୍ରନ୍ଥରେ !
ଅରୁଣ ।। (ପଶିଆସିଲ, ହାତରେ ଗ୍ଲେଟ ଏକ ବ୍ୟାଗ୍) କ'ଣ ହେଲା, ନୂଆବୋଉ ? ଟୁଲୁଟୁର କ'ଣ ହେଲା ?
ଶୋଭା ।। ଅରୁଣ, ପୁଅ କହୁଚ, ଗ୍ରନ୍ଥରେ ବ କଷ୍ଟ ହେଉଚ—
ଅରୁଣ ।। ଦେଖି, ଟୁଲୁଟୁ—(ଟୁଲୁଟୁ ପାଖକୁ ଯାଇ ପରୀକ୍ଷା କରିବାକୁ ଲାଗିଲେ)
ଶୋଭା ।। ଅରୁଣ, ସେ କୁଆଡ଼େ ଗଲେ ?
ଅରୁଣ ।। ଜାଣେନା ।
ଶୋଭା ।। ଜାଣନା ! ଅରୁଣ ?
ଅରୁଣ ।। ଆଁ କଲୁ ଟୁଲୁଟୁ, ଜଭ ଟିକେ ଆଉ ଆଗକୁ । ଆଁ କର— (ନିଜେ ସେମିତି କରି ଦେଖାଇ ଦେଲେ । ଟୁଲୁଟୁ ସେଇଆ କଲା)
ଅରୁଣ ।। ହୁଁ ।
ଶୋଭା ।। ଅରୁଣ, କିଛି କୁଆଡ଼େ ଗଲେ ସେ ?
ଅରୁଣ ।। ଟୁଲୁଟୁ, ଠିକ୍ କେଉଁଠି କଷ୍ଟ ହେଉଛି ?
ଶୋଭା ।। ତୁମକୁ କ'ଣ କହିଲେ ସେ, ଅରୁଣ ?
ଅରୁଣ ।। ଏଁ ···ଟୁଲିଟୁକୁ ଜର ।
ଶୋଭା ।। ଖାଲି ଏତିକି । ଆଉ କିଛି କହି ନାହାନ୍ତି ? ଏଠିକି ଆସିବାକୁ ବ ?
ଅରୁଣ ।। ଟୁଲୁଟୁକୁ ଜର, କହିବେ କ'ଣ ·ଆସିବାକୁ ? ·ନୂଆବୋଉ, ଟୁଲୁଟୁର ପରୀକ୍ଷା କେମିତି ହଉଚ ?
ଶୋଭା ।। ତମକୁ ଆସିବାକୁ ବ କହିଲେ ନାହିଁ ?
ଅରୁଣ ।। ପରୀକ୍ଷା କିଛି ନୂଆବୋଉ, ଟିକେ ପରୀକ୍ଷା କରିନେଲେ ଭଲ ହେବ ।
ଶୋଭା ।। ଔଷଧପତ୍ର କିଛି ଆଣିବାକୁ ତମକୁ—
ଅରୁଣ ।। ହୁଁ ଆଚ୍ଛା, ନୂଆବୋଉ ଝାଡ଼ା ?
ଶୋଭା ।। କ'ଣ ପଚାରୁଛ ପରି ଅରୁଣ ?
ଅରୁଣ ।। କ'ଣ ନୂଆବୋଉ ?
ଶୋଭା ।। ତମକୁ ସେ ଆଉ କିଛି କହିଲେ ନାହିଁ ?

ଅରୁଣ ।। ନା ତ—ବାଟରେ ଦେଖାହୋଇଗଲେ—କହିଲେ ଟୁଲୁଟୁକୁ ଜର—

ଶୋଭା ।। ଅରୁଣ !

ଅରୁଣ ।। ତୁମେ ଭୟ କରନା, ନୂଆବୋଉ । ମୁଁ ଟୁଲୁଟୁ ପାଇଁ ଔଷଧ ଆଣିଛି । ତାକୁ ବର୍ତ୍ତମାନ ଏଇ ଇଞ୍ଜେକ୍ସନ୍ ଦେଇ ଯାଉଛି, ଆଉ ତା ପରସ୍ତା ନେଇ ଯାଉଛି...ଦରକାର ପଡିଲେ ଆଉଥରେ ଆସି – ଝିକେ କରମାଡ଼ି ଶୋଇଲୁ ଟୁଲୁଟୁ—ଏ ଇଞ୍ଜେକ୍ସନ୍‌ଟା—(ଔଷଧ ବ୍ୟାଗରୁ କାଢ଼ିଲେ)

ଶୋଭା ।। ଅରୁଣ ! ଆଉ, ପୁଅ ମୋର ଇଞ୍ଜେକ୍ସନ୍ ନେବ ନାହିଁ ।

ଅରୁଣ ।। ଇଞ୍ଜେକ୍ସନ ନେବ ନାହିଁ ?

ଶୋଭା ।। ନା—(ସେ ଇଞ୍ଜେକ୍ସନ ଓ ଅନ୍ୟ ଔଷଧ ଉଠାଇ ନେଇ ଝରକା ବାହାରକୁ ପକାଇ ଦେଲେ)

ଅରୁଣ ।। (କିଛି ବୁଝି ନ ପାରି) ନୂଆବୋଉ !

ଶୋଭା ।। (ହଠାତ୍ କହିଁ କହିଁ ହୋଇ କାନ୍ଦି) ଔଷଧ, ଇଞ୍ଜେକ୍ସନ ଦେବା କିଛି ଦରକାର ପଡ଼ିବ ନାହିଁ । ଅରୁଣ, ପୁଅ ମୋର କିଛି ଖାଇବ ନାହିଁ, ପୁଅ ମୋର ସେମିତି ଭଲ ହେବ ।

ଅରୁଣ ।। ନୂଆବୋଉ, ଏ କ'ଣ କଲେ ? ଇଞ୍ଜେକ୍ସନ ଔଷଧସବୁ—

ଶୋଭା ।। ତୁମେ ଯା ଅରୁଣ, ପୁଅ ମୋର ସେମିତି ଭଲ ହେବ । ତା'ର କେହି ନାହାଁନ୍ତି, ସେ ସେମିତି ଭଲ ହେବ । (ଆହୁରି ଜୋର୍‌ରେ କାନ୍ଦି ଉଠିଲେ) ତୁମେ ଯା—ତୁମେ ଯା, ଅରୁଣ...

(ଅରୁଣ ପରିସ୍ଥିତି ବୁଝି ନ ପାରି ବିଚଳିତ ହୋଇପଡ଼ୁଥିଲେ)

ଟୁଲୁଟୁ ।। ବୋଉ ! ତୁ କାନ୍ଦୁଚୁ କାହିଁକି, ବୋଉ—ଅଜା···ଅଜା···

ଅରୁଣ ।। ଉଠନା ଟୁଲୁଟୁ, ଉଠନା ।

ଟୁଲୁଟୁ ।। ନା, ମତେ ଅଜା ପାଖକୁ ନେଇ ଚାଲ । ମୁଁ ଏଘରେ ଶୋଇବି ନାହିଁ । ଅଜା—ଆରେ, ଜବାବ ଦେଉନା କାହିଁକି ? ଅଜା—ଅଜା !

(ଗୁଟିପିଟି ହୋଇ ଚାଲିଗଲା)

ଅରୁଣ ।। ନୂଆବୋଉ ! ଟୁଲୁଟୁକୁ ଏମିତି ଚାଲିବାକୁ ଦିଅନା, ମୁଁ କିଛି ବୁଝି-ପାରୁ ନାହିଁ । କ'ଣ ଏସବୁ ହେଉଚି ?

ଶୋଭା ।। (ଆହୁରି ଜୋରରେ କାନ୍ଦି କାନ୍ଦି) ତୁମେ ଯା, ଅରୁଣ—ଅନୁରୋଧ କରୁଛି, ତୁମେ ଚାଲି ଯା ।

ଅରୁଣ ।। ନୂଆବୋଉ !

ଶୋଭା ॥ ତୁମେ ଯା ଅରୁଣ, ତୁମେ ଯା—

(ଅରୁଣ କିଂକର୍ତ୍ତବ୍ୟବିମୂଢ଼ ହୋଇ ବାହାର ଗଲେ । ଶୋଭା ସେମିତି କାନ୍ଦୁଥାନ୍ତି, ପଶି ଆସିଲେ ବୁଢ଼ା)

ବୁଢ଼ା ॥ ଶୋଭା···କ'ଣ ହେଲା...ଟୁଲୁଟୁ କ'ଣ ଏମିତି ଯାଇ ମୋ ବଦ୍ଧଣାରେ ଚୂପ୍‌କରି ଶୋଇପଡ଼ିଲା, କ'ଣ ହୋଇଛି—ଶୋ...(ଶୋଭା କାନ୍ଦ ଲୁଚି ପାରିଲେ ନାହିଁ, ଶୋଭାଙ୍କର ଆଖିରେ ଲୁହ ଦେଖିପାରି) ଶୋଭା···

ଶୋଭା ॥ (ଲୁଚେଇବାର ଚେଷ୍ଟା କରି) ନା—ମୋର କିଛି ହୋଇନି ।

ବୁଢ଼ା ॥ କିଛି ହୋଇନି, (ଆଦେଶ ଦେବା ଗଳାରେ) ଦେଖ ତ ଏ ଫଟୋଟା କା'ର ?

(ପକେଟରୁ ଗ୍ରେଟ କାଚ ଫ୍ରେମ୍‌ରୁ ଏକ ଫଟୋ କାଢ଼ିଲେ)

ଶୋଭା ॥ କୋଉ ଫଟୋ ?

ବୁଢ଼ା ॥ (ବାହାର କରି) ଆର ଘରର ଡ୍ରେସିଂ-ଟେବୁଲ ଉପରେ ଥୁଆ-ହୋଇଥିଲା, ଏଇ ଫଟୋଟା—

ଶୋଭା ॥ ଏ ତାଙ୍କ ପିଲାଦିନର ଫଟୋ ।

ବୁଢ଼ା ॥ (କଥା କହିପାରିଲେ ନାହିଁ, ଅସ୍ପଷ୍ଟ ସ୍ୱର) ଡ଼ାକ୍ତରର···

ଶୋଭା ॥ ହୁଁ !

ବୁଢ଼ା ॥ ଶୋଭା ମନେ ଧର, ପୁଣି ମୁଣ୍ଡଟା ସେମିତି···(ଗୋଡ ହ୍ୟାଡେ ସ୍ୟାଡେ ନଡ଼ବଡ଼ ହୋଇପଡ଼ିଲା)

ଶୋଭା ॥ ଏଁ ! ଏମିତି ଥରୁଛନ୍ତି କ'ଣ ? ପୁଣି କ'ଣ ହେଲା ?

ବୁଢ଼ା ॥ ମୋର, ଏଁ—(ନିଜକୁ ସବଳକରିବାର ଚେଷ୍ଟାକରି) ନା, କିଛି ନାହିଁ—ଡାକ୍ତରର ନାଁଟା···ଓ, ତପନ...···ହୁଁ, କୁଆଡେ ଗଲା, ତପନ—ବଦମାସ୍, ଶୟତାନ—          (ରାଗରେ ହେ ଥରିବାକୁ ଲାଗିଲେ)

ଶୋଭା ॥ ଏ କ'ଣ କହୁଛନ୍ତି, ଆପଣ ! ପାଗଳ ହୋଇଗଲେ ନା କ'ଣ ? (ବ୍ୟସ୍ତ ହୋଇ) ମୁଁ ଜାଣେ ସବୁ, ତାହାକୁ ନ ପଚାରି ଆଖିର ପଟିଟା ଖୋଲି-ଦେଲେ ନିଶ୍ଚୟ ମସ୍ତିଷ୍କରେ...

ବୁଢ଼ା ॥ ମସ୍ତିଷ୍କରେ—ସ୍ନାୟୁରେ, ରକ୍ତରେ—ମାଂସରେ······ଅତୀତରେ... ଭବିଷ୍ୟତରେ—ସବୁଥିରେ ବିଷ ଚହଟିଯାଇଛି—

ଶୋଭା ॥ (ପାଟିକରି ଡାକିଲା) ଟୁଲୁଟୁ, ବାପୁ...ଆଃ କ'ଣ ଏସବୁ ହେଉଛି ?

ବୁଢ଼ା ॥ ମୁଁ ପାଗଲାମି କରୁଚି···ନା ନା, ଶୋଭା, ମୁଁ ପାଗଲାମି କରିବି ନାହିଁ—ମୁଁ ସବଳ ହେବି, ମୁଁ ଶେଷ ପର୍ଯ୍ୟନ୍ତ ସଂଗ୍ରାମ କରିବି, ମୁଁ ପରାଜୟ ସ୍ୱୀକାର କରିବି ନାହିଁ ।

ଶୋଭା ॥ କ'ଣ ଏସବୁ···ଆପଣ ସତେ ପାଗଳ ହୋଇଗଲେଣି ।

ବୁଢ଼ା ॥ (ହଠାତ୍ ଚଞ୍ଚଳ ହୋଇଯାଇ) ଶୋଭା—ଯା, ପ୍ରସ୍ତୁତ ହୋଇ ଯା···

ଶୋଭା ॥ ପ୍ରସ୍ତୁତ ହୋଇଯିବ ?

ବୁଢ଼ା ॥ ମୁଁ ତତେ, ଆଉ ଟୁଲୁଟୁକୁ ସଙ୍ଗେ ସଙ୍ଗେ ପୁନା ନେଇଯିବି ।

ଶୋଭା ॥ ପୁନା··· ?

ବୁଢ଼ା ॥ ଭାବିଥିଲି, ଆଉ ଫେରିବି ନାହିଁ । ଭାବିଥିଲି ଗ୍ରାଣ୍ଡ······ ଏଁ··· ଠିଆହୋଇ ରହିଛୁ କ'ଣ ? ଯା, ଶାଢ଼ୀଟା ବଦଳାଇପକା—କିଛି ନେବାକୁ ପଡ଼ିବ ନାହିଁ······ମୋର ସେଇ ଆଟାଚିଟା ଖାଲି ହାତରେ ଧରି ଚାଲିଆ······

ଶୋଭା ॥ ଆପଣ ଟିକିଏ ଚୁପ୍ ହୁଅନ୍ତୁ—ପାଗଳାମି କରନ୍ତୁ ନାହିଁ । ଟୁଲୁଟୁର ଦେହ ଭଲ ନାହିଁ—ସେ—

ବୁଢ଼ା ॥ ସହରେ ଏଠୁ ବମ୍ବେ ଏୟାର ସର୍ଭିସ୍ ଅଛି ? ଜାଣିଛୁ କି ?

ଶୋଭା ॥ ବମ୍ବେ ?

ବୁଢ଼ା ॥ ବ୍ୟସ୍ତ ହ'ନା, ମୁଁ ଫୋନ୍ କରି ବୁଝି ନେଉଛି—(ଆରଘର ଦ୍ୱାର-ମୂର୍ଦ୍ଧ ପାଖରେ ସେ ଫୋନ୍ ଧରି କହିବାକୁ ଆରମ୍ଭ କଲେ—ସାରା ଦେହ ତାଙ୍କର ଦେଖାଯାଉଥାଏ ଓ କଥା ସ୍ପଷ୍ଟ ଶୁଣାଯାଉଥାଏ) ହାଲୋ—ସହରେ ବମ୍ବେ ଏୟାର ସର୍ଭିସ୍ ଅଛି ? ଓ, ଅଛି, ତା'ହେଲେ ···ଏଁ···ଶୀଘ୍ର ବାହାରିଗଲେ ମିଳିଯିବ, କେତେଟାବେଳେ, ଆଠଟା ···ଅଚ୍ଛା···ଶୁଣନ୍ତୁ, ଡନଟା—ସିଟ୍—ଭାହା ଦାଁରେ ? (ବୁଢ଼ା ରିସିଭରଟା ରଖିଦେଇ ଶୋଭାଙ୍କ ପାଖକୁ ଆଗେଇ ଆସିଲେ ।)

ବୁଢ଼ା ॥ ଆଶ୍ଚର୍ଯ୍ୟ, ଛକ୍କାହୋଇ ଦେଖୁଚୁ କ'ଣ ? ମୋ ଯାଙ୍ଗରେ ସହଯୋଗ କର; (କ'ଣ ମନେ ପଡ଼ିଗଲା ଯେମିତି) ଏଁ, ଟୁଲୁଟୁ ? ଟୁଲୁଟୁ ଔଷଧ ଖାଇନାହିଁ । ମୁଁ ତା' ପାଇଁ ବାଟରୁ ଔଷଧ···ମୁଁ ତାକୁ ପ୍ରସ୍ତୁତ କରିନିଏ...ତୁ ବିଳମ୍ବ କରନା ଶୋଭା···(ସେ ଆର ଘରକୁ ପଶିଗଲେ)

ଶୋଭା ॥ (କିଛି ଉପାୟ ନ ପାଇ) ବାପୁ, ବାପୁ !

ବାପୁ ॥ (ପଶି ଆସି) ମା'...

ଶୋଭା ॥ ଜାଣୁ ବାପୁ, ବାବୁ କୁଆଡ଼େ ଯାଇଛନ୍ତି···?

ବାପୁ ॥ ବାବୁ ଗାଡ଼ି ତ ନେଲେନି, ମୁଁ କେମିତି ଏଠିଆଇ ଜାଣିବି ମା' ?

ଶୋଭା ॥ ଓଃ···

ବାପୁ ॥ ଏଇ ତ, ବାବୁ କ'ଣ ଇଆଡେ ଆସୁଛନ୍ତି ନା କ'ଣ, ମା' ।

ଶୋଭା ।। ଓଃ, ଅସି ଯାଉଛନ୍ତି— ରକ୍ଷା, ଭଗବାନ— ଯା ବାପୁ···। (ବାସୁ ବୁଲଉଲ୍, ପଶିଆସିଲେ ତପନ)

ତପନ ।। ଶୋଭା···

ଶୋଭା ।। ଶୁଣିଲଣି ?

ତପନ ।। ସବୁ ଶୁଣିଲିଣି—ଅଭଦ୍ରତା, ଅଚତାର ଗୋଟାଏ ସୀମା ଅଛି ଶୋଭା ···ଛି ଛି, ତୁମେ ଏତେ ନୀଚ ହୋଇପାରିଲ ? ଅରୁଣ ହାତରୁ 'ସିରଞ୍ଜି' ଔଷଧଟକୁ ଫୋପାଡ଼ି ଦେଇପାରିଲ ?

ଶୋଭା ।। ହଁ, ଫୋପାଡ଼ି ଦେଲି, ତୁମେ ତାହାଙ୍କ ଆଗେ ପୁଅକୁ ଅବହେଳା କରି ଛୁଟି ଚାଲିଗଲ—?

ତପନ ।। ତୁମେ ମୋର ଧୈର୍ଯ୍ୟର ଅସ୍ଥାନକୁ ଯିବାଉଛ ଶୋଭା ! ନିଜର ସୀମାରୁ ଟପି ଅନ୍ୟର ସୀମାକୁ ନ ଗଲେ ମୁଁ ଖୁସିହେବି—ଶୋଭା, ମୁଁ ତୁମକୁ ଆଜି ଶେଷଥର ପାଇଁ କହିଦେଉଛି—ଯେଉଁ କଥାରେ ତୁମର ସମ୍ପର୍କ ନାହିଁ, ଯେଉଁ କଥା ତୁମର ଜାଣିବା ଦରକାର ନାହିଁ, ସେ କଥା ତୁମେ—

ଶୋଭା ।। ହେଲା—ମତେ ପଛେ ଯାହା କହିବ, ପରେ କହିବ । ସ୍ୱାତେ କ'ଣ ହେଲଣି ଟିକେ ଶୁଣ—

ତପନ ।। ଛି ଛି, ଆଉ, ମୁଁ କୌଣସି ଅଭିଯୋଗ ଶୁଣିବାକୁ ଚାହେଁନା—(ବାହାରି ଯାଉଥିଲେ)

ଶୋଭା ।। ଏଁ, ଏମିତି ପଳାଇ ଯାଉଛ କୁଆଡେ ?—ଘରେ କ'ଣ ହେଲଣି ଟିକେ ଶୁଣ ଭଲା—

ତପନ ।। ଘରେ ? କ'ଣ—ଟୁଲୁଟୁକୁ ଜର ଟିକେ ହୋଇଯାଇଛି—ଏମିତି ଅନେକଙ୍କର ଜର ହୁଏ ଡାକ୍ତର ଘର, ଡାକ୍ତର ଦେଖିବା ବା ଚିକିତ୍ସାର ଅଭାବ ହେବନି ।

ଶୋଭା ।। ଟୁଲୁଟୁ କଥା ନୁହେଁ । ବୁଢ଼ାଙ୍କ କଥା ।

ତପନ ।। ବୁଢ଼ାଙ୍କର କ'ଣ ହେଲା ?

ଶୋଭା ।। ବୁଢ଼ା ଅଟିର ବ୍ୟାଣ୍ଡେଜଟା ଖୋଲିଦେଇ ପାଗଳ ହୋଇଗଲେଣି ।

ତପନ ।। ପାଗଳ ହୋଇଗଲେଣି ?

ଶୋଭା ।। ହଠାତ୍ କହିବାକୁ ଆରମ୍ଭ କରିଛନ୍ତି, ମତେ ଆଉ ଟୁଲୁଟୁକୁ ପୂଜା ନେଇଦିବେ ।

ତପନ ।। ପୂଜା ନେଇଦିବେ ?

ଶାନ୍ତ || ବର୍ତ୍ତମାନ ପିବାପାଇଁ ଏବେଗୁଡ଼ାମାନଙ୍କୁ ଟେଲିଫୋନ କରି ଟିକେଟ ବୁକ୍ କରି ସାରିଲେଣି ।

ତପନ || ଟିକେଟ ବୁକ୍ କରିସାରିଲେଣି । କି ଅଦ୍ଭୁତ ଲୋକ ! ଖାଲି ଗୋଟାଏ ମୁହୂର୍ତ୍ତର ଖିଆଲରେ ମୁଁ ଘରକୁ ନେଇ ଆସିଲି... ଧୂମକେତୁ ପରି ମୋ' ଘରକୁ... (ବୁଢ଼ା ପଶି ଆସିଲେ)

ବୁଢ଼ା || ଶୋନ୍ତ— ଟୁଲୁଟୁକୁ ପ୍ରସ୍ତୁତ କରିଦେଇଛୁ ? ଟୁଲୁଟୁ ସ୍ତିର ଖୁସି । ଏଁ...କିଏ ଡାକ୍ତର...ଓ ତୁ ଡାକ୍ତର, ଗୁଡ୍,...ଆ ଶୋନ୍ତ— ଗୋଟାଏ ଦୁଃସ୍ୱପ୍ନ ପରି ଏ ଘରକୁ ଭୁଲିଯା—ଆ ।

ତପନ || କଣ ଏସବୁ ହେଉଛି ?

ବୁଢ଼ା || କ'ଣ ? ...ମୁଁ ଏମାନଙ୍କୁ ନେଇଯାଉଛି ଏଠୁ । ଏମାନଙ୍କୁ ମୁଁ ଏଠିକାର ବିମାକ୍ତ ବାୟୁମଣ୍ଡଳ ଭିତରେ ରଖିଦେବି ନାହିଁ । ମୁଁ ଶେଷ ପର୍ଯ୍ୟନ୍ତ ଟୁଲୁଟୁକୁ ରକ୍ଷା କରିବାର ଚେଷ୍ଟା କରିବି ।

ଶୋନ୍ତ || ଆପଣ ପାଗଳାମି କରନ୍ତୁ ନାହିଁ ।

ତପନ || ଜାଣେନା, ଖାଲି ଆପଣଙ୍କୁ କିଛି କହିଲାବେଳେ ମନ ମୋର ଥରି ଉଠେ...ସେଇ ଦୁର୍ବଳତାରେ ମୁଁ ଆପଣଙ୍କୁ ଏଠିକି ନେଇ ଆସିଛି... କିନ୍ତୁ ସବୁ କଥାରେ ବି ସୀମା ଅଛି ! ମୋ ପରିବାର ଉପରେ ପକ୍ଷ ବିସ୍ତାର କରି ଏମିତି ମନମୁଖୀ ଭାବେ ଚଳିବାକୁ ମୁଁ ଆଉ ଆପଣଙ୍କୁ ଛାଡ଼ିଦେବି ନାହିଁ । ଏ ଭଦ୍ରଲୋକର ଘର । ବେଶି ପାଗଳାମି କରିବେ ତ ପୋଲିସକୁ ଫୋନ କରି ପାଗଳାଗାରଦକୁ...

ବୁଢ଼ା || ଆହ ଆହ—ଖୁବ୍ ହୋଇଛି । ଖୁବ୍ ହୋଇଛି । ଖୁବ୍ ଆଗେଇ ଯାଇଛୁ ତୁ...ପରିବାର ଉପରେ ଯଥେଷ୍ଟ ଅତ୍ୟାଚାର ତୁ ଆରମ୍ଭ କରି ଦେଇଛୁ ।

ତପନ || ପରିବାର ଉପରେ ମୁଁ ଅତ୍ୟାଚାର କରିଛି ! (ଆଉ ସହ୍ୟ କରିପାରି ପାରି କରି) ବାପୁ...ବାପୁ...ଗାଡ଼ିରେ ସ୍ୱାକୁ ନେଇ...

ବୁଢ଼ା || ଚୁପ୍ କର । ଟୁଲୁଟୁକୁ ଜରରେ ପକାଇ ଦେଇ କୁଆଡେ ବୁଲି ଯାଇଥିଲୁ...ସୀମା ସହିତ ସିନେମା—କହ, କୁଆଡ଼େ ଯାଇଥିଲୁ ?

ତପନ || ସେ କଥା ଜାଣିବାକୁ ଆପଣଙ୍କର କି ଅଧିକାର ଅଛି ? କିଏ ଆପଣ... ମୋର ସଂସାରକୁ ଆନ୍ଦୋଳିତ କରି ଧୂମକେତୁ ପରି—କିଏ ଆପଣ ?

ବୁଢ଼ା || ଶିବନାରାୟଣ ରାଉତର ନାଁ ଶୁଣିଛୁ—? ମଧୁପାଟଣା ଗାଁର ଶିବନାରାୟଣ ରାଉତ ? —ଯେ ଏଗାର ବର୍ଷର ପିଲାକୁ ମା' ପାଖରେ ଛାଡ଼ିଦେଇ

ଆଜକୁ ପ୍ରାୟ ତିରିଶ ବର୍ଷ ତଳେ ଆଉ ଜଣେ ସ୍ତ୍ରୀଲୋକ ସହିତ ଚାଲି ଯାଇଥିଲି—ତରୁଣ ପାଇଁ ଗାଁରୁ···ଓଡ଼ିଶାରୁ...

ତପନ ।। (ସ୍ତମ୍ଭୀଭୂତ ହୋଇଯାଇ) ବାପା !

ବୁଢ଼ା ।। ବାପା···

ଶୋଭା ।। ବାପା ···

ବୁଢ଼ା ।। ଖୁବ୍ ବଡ଼ ହୋଇଯାଇଛୁ ନା ? ଗଲାବେଳେ ତୋ ବୋଉ ହାତରେ ଲକ୍ଷେରୁ ଅଧିକ ଟଙ୍କା ଦେଇଯାଇଥିଲି — ତୋ ନାଁଟା ସ୍କୁଲରେ ଲେଖାଇଲା ବେଳେ ବଦଳାଇ ଦେବାକୁ କହିଯାଇଥିଲି···ବିଶ୍ୱସ୍ତ ହିତଗ୍ରାହିଣୀ ବୋଉ ତୋର, ମୋ କଥା ରଖି ତରୁଣ ନାଁକୁ ବଦଳାଇ ତପନ ନାଁ ରଖିଲା···(ଦୀର୍ଘଶ୍ୱାସ ପକାଇ) ଯା ହେଉ, ଖୁବ୍ ମଣିଷ କରିଛି ତତେ···

ତପନ ।। ବାପା···ଆପଣ···ଆପଣ ଏତେଦିନ ବଞ୍ଚି ରହିଛନ୍ତି, ଭୁଲ୍‌ରେ ବି କେବେ···

ବୁଢ଼ା ।। ନା...ଆଜି ତୋର ସେଇ ଝିଅ ସୀମାପ୍ରତି ଯେଉଁ ନିଶା ଆସି ପହଞ୍ଚି ଯାଇଛି, ମୋର ବି ଠିକ୍ ସେମିତି ଆସିଲା ସେ ଦିନ । ଠିକ୍ ଏମିତି ମୁଁ ଘରକୁ ଅବହେଳା କରିବାକୁ ଆରମ୍ଭ କରିଥିଲି—ଛୋଟ ଛୋଟ କଥାରେ ସ୍ୱାମୀ-ସ୍ତ୍ରୀଙ୍କ ଭିତରେ ଅଶାନ୍ତିର ଝଡ଼ ବହିଚାଲିଲା— ତୋ' ବୋଉର ଅସହାୟତା ମୁଁ ପଦେ ପଦେ ଅନୁଭବ କରୁଥିଲି;—କିନ୍ତୁ ସେଇ ଝିଅଟି ପାଇଁ ଦୁରନ୍ତ ଆକର୍ଷଣରୁ ମୁଁ ନିଜକୁ ମୁକ୍ତ କରିପାରିଲି ନାହିଁ । ହଠାତ୍ ଦିନେ ଭାବିଲି, ମୁଁ ଘରେ ରହିଲେ ଧୀରେ ଧୀରେ ତୁ ମୋ କଳଙ୍କରେ ସଂକ୍ରମିତ ହୋଇଯିବୁ···ସେଥିପାଇଁ ଘରର ଅଶାନ୍ତି...ମୋ ମନର ଝଡ଼ର ଅଶାନ୍ତି ତରୁଣ ଲାଗି ଦୂର କରିଦେବା ପାଇଁ ହଠାତ୍ ଦିନେ ଘରଛାଡ଼ି ଚାଲିଗଲି, ସେହି ଝିଅକୁ ସଙ୍ଗରେ ଧରି...ନୂଆ ଜୀବନର ସନ୍ଧାନରେ—ଅନେକ ଦିନ ଅନେକ ବର୍ଷ ପରେ ସମସ୍ତେ ଭାବିଲେ ମୁଁ ମରି ଯାଇଛି···ସେଇ ମୃତର ପ୍ରେତାତ୍ମା ମୁଁ ତପନ—ମୁଁ ଖରାପ ମଣିଷ ନ ଥିଲି ତପନ—କିନ୍ତୁ···ଓଃ, ଝଡ଼ାଜାହାଜ ଛାଡ଼ିବାର ଟାଇମ ହୋଇଯାଇଛି ନା କଣ ?

ତପନ ।। ମତେ କ୍ଷମା କରନ୍ତୁ ।

ବୁଢ଼ା ।। କ୍ଷମା ? ତୁ ହୁଏତ କହିବୁ, ବାପା, ମୁଁ ସୀମା ସହିତ ସବୁ ସମ୍ପର୍କ ତୁଟାଇ ଦେବି;—କିନ୍ତୁ ତପନ, ପାରିବୁ ନାହିଁ—ତୋ ରକ୍ତରେ ମୋ କଳଙ୍କ...ତପନ—ଯାହା ନିଜର ନୁହେଁ, ତାକୁ ପାଇବା ପାଇଁ ଅଦମ୍ୟ

ପିପାସାକୁ ମୁଁ ରୋକ ପାରି ନଥିଲି—ତିରିଶ ବର୍ଷ ପରେ ଅଜି ବି ଦେଖୁଚି, ତୋ'ଠାରେ ସେହି ପିପାସା ଆରମ୍ଭ ହୋଇଯାଇଛି— ତୁ ବି ତାକୁ ରୋକ ପାରିବୁ ନାହିଁ । ଜାଣୁ ତପନ ? ସେଇ ଝିଅ ଘରଛାଡ଼ି ଚାଲିଗଲା ପରେ ଭାଗ୍ୟର ପରିବର୍ତ୍ତନ ମୋର ଆସିଲା । ଯେଉଁଠି ହାତ ଦେଲି ସେଠି ମାଟି ସୁନା ହେଲା;—କିନ୍ତୁ ତୋ ବୋଉର ଅଭାବରେ ପୁଣି ମୋର ମନ ଛଟପଟ ହୋଇ ଉଠିଲା···କିନ୍ତୁ—କିନ୍ତୁ ମୁଁ ପାରିଲି ନାହିଁ । କେବଳ ତୋର ଭଲ ପାଇଁ ମୁଁ ଫେରି ଅସି ପାରିଲି ନାହିଁ... ଆଚ୍ଛା, ତପନ, ଆମକୁ ଅନ୍ତତଃ ଟିକେ ଏରୋଡ୍ରମରେ ପହୁଞ୍ଚାଇ ଦେଇ ଆ ।

ତପନ ॥ ମତେ କ୍ଷମା କରନ୍ତୁ—ଆପଣ ଯାନ୍ତୁ ନାହିଁ—ଆପଣଙ୍କର ଆଶୀର୍ବାଦରେ ଏ ପରିବାର ଶାନ୍ତ ହୋଇ ଉଠିବ—ନୂଆ କରି ଜୀବନକୁ ମୁଁ—

ବୁଢ଼ା ॥ ପାରିବୁନି ତପନ, ପାରିବୁନି । ରକ୍ତରେ ତୋର ଯେଉଁ ଜୀବାଣୁ ଚରି-ଗଲାଣି, ତାକୁ ତୁ...ନା, ତୁ ପାରିବୁ ନାହିଁ । ମନର ସେ ଝଡ଼କୁ ତୁ ସଂଯତ କରି ପାରିବୁ ନାହିଁ । ଅଶାନ୍ତ ଝଡ଼ର ସମୁଦ୍ରରେ—ତୁ, ତୋର ମାନସୀ, ତୋର ସ୍ତ୍ରୀ, ସମସ୍ତେ ରକ୍ତାକ୍ତ ହୋଇଉଠିବେ— କାହାର ଲାଭ ହେବନି । ଏ ସଙ୍ଘର୍ଷ ଭିତରେ ମୁଁ—ଟୁଲୁଟୁକୁ ରଖିବାକୁ ଚାହେଁ ନା । ଜୀବନରେ ସବୁ ତ୍ୟାଗ କରି ମୁଁ ତତେ ରକ୍ଷା କରି-ପାରିଲି ନାହିଁ—ମୁଁ ଶେଷପର୍ଯ୍ୟନ୍ତ ଏ ସଂଗ୍ରାମ ଚଳାଇବି । ମୁଁ ଟୁଲୁଟୁକୁ ରକ୍ଷା କରିବାକୁ ଚେଷ୍ଟା କରିବି । ଆ, ଶୋଭା— ଓ, ତୁ ଯିବୁ ନି ? ବେଶ—(ବାହାରିଗଲେ ଅନ୍ୟ ଘରକୁ )

ତପନ ॥ ଶୋଭା, ସେ ମୋ କଥା ଶୁଣିବେ ନାହିଁ—ତୁମେ ତାଙ୍କୁ କହିଲେ ସେ ଅଟକି ଯିବେ—ଯା, ମତେ ଚାହିଁନ୍ତୁ କ'ଣ—ଯା ··· ଶୋଭା—

ବାସୁ ॥ (ପଶିଆସି) ବାବୁ ! ବୁଢ଼ା ବାବୁ ଟିକିବାବୁଙ୍କୁ ନେଇ ଗାଡ଼ିରେ ବସାଇଲେଣି ।

ତପନ ॥ ଏଁ, ଟୁଲଟୁକୁ ( ମଟର ଷ୍ଟାର୍ଟ ହେଉ )

ବାସୁ ॥ (ବାହାରକୁ ଅନାଇ) ବାବୁ···ବୁଢ଼ାବାବୁ ଗାଡ଼ି ଚଳାଇ ଚାଲିଗଲେ ।

ଶୋଭା ॥ ଟୁଲୁଟୁ—

ତପନ ॥ ଟୁଲୁଟୁ—

(ଦୁହେଁ ଦାଣ୍ଡର କବାଟ ନିକଟକୁ ଗଲାବେଳେ କାର୍ଟନ ଦେଇବାଟ ଦେଇ ଚାଲିଗଲା)

●

# ଛଦ୍ମବେଶୀ

ବିଶ୍ୱଜିତ ଦାସ

॥ଚରିତ୍ର॥

ବୈକୁଣ୍ଠନାଥ
ମଣିଶଙ୍କର
ଜୟନ୍ତ

ପ୍ରଭାବତୀ
ମିନା

[ପାର୍ଲମେଣ୍ଟ ସଭ୍ୟ ଶ୍ରୀଯୁକ୍ତ ବୈକୁଣ୍ଠନାଥ ପଟ୍ଟନାୟକଙ୍କ କଟକ ସହରସ୍ଥ ବାସଭବନ—ସମୟ—ସକାଳ । ଶ୍ରୀଯୁକ୍ତ ପଟ୍ଟନାୟକଙ୍କ ସୁସଜ୍ଜିତ ବୈଠକଖାନାର ଗୋଟିଏ ଦାମିକା ସୋଫା ଉପରେ ନିଶ୍ଚିନ୍ତ ଭାବରେ ଆଉଜି ବସି ଖବରକାଗଜ ପଢ଼ୁଥିଲେ ବୈକୁଣ୍ଠନାଥଙ୍କର ଏକମାତ୍ର ବିବାହିତା ଭଗ୍ନୀ ମିନା । ମିନା ସୁନ୍ଦରୀ, ବୟସ ଖୁବ୍ ବେଶି ହେଲେ ୨୩-୨୪ ପାଖାପାଖି । ହାବଭାବ ଓ ପୋଷାକ-ପରିଚ୍ଛଦରେ ଆଭିଜାତ୍ୟ ଚିହ୍ନ ସୁସ୍ପଷ୍ଟ ।

ଅଳ୍ପ କିଛି ସମୟ ପରେ ଦୁଆର ପାଖରେ ଦେଖାଦେଲେ ଜୟନ୍ତ ଦାସ—ବୈକୁଣ୍ଠନାଥଙ୍କ ଭଣୋଇ—ମିନାର ସ୍ୱାମୀ । ଶ୍ରୀଦାସ ଜଣେ ସୁପରିଚିତ ଏମ୍.ଏଲ୍.ଏ. । ବୟସ ୩୦ରୁ ୩୫ ଭିତରେ । ମୁହଁରେ ଦାଢ଼ି, ବେଶଭୂଷା ଅବଶ୍ୟ ଅତ୍ୟନ୍ତ ସାଧାରଣ ।

ମିନାର ଅଲକ୍ଷ୍ୟରେ ଗୋଡ଼ ଚପିଚପି ପଶିଆସିଲା ଜୟନ୍ତ । ହାତରେ ତା'ର ଗୋଟାଏ ଚମଡ଼ା ବ୍ୟାଗ୍ । ସମ୍ଭବତଃ ଏଇ ସାଙ୍ଗେ ସାଙ୍ଗେ କଟକ ବାହାରୁ ଫେରିଛି । ମିନାକୁ ତଥାପି ଖବରକାଗଜରେ ନିମଗ୍ନ ଦେଖି ଜୟନ୍ତ ଆସ୍ତେ ଆସ୍ତେ ପଛଆଡ଼ୁ ଆସି ଅତର୍କିତ ଭାବରେ ତା' ହାତରୁ ଖବରକାଗଜଟି ଛଡ଼ାଇ ନେଲା । ଚମକି ଉଠି ପଛକୁ ବୁଲି ଚାହିଁଲା ମିନା)

ମିନା ।। (ଅଶ୍ରୁପୂର୍ଣ୍ଣ ହୋଇ) ତମେ ! କୁଆଡ଼ୁ ଆସିଲ ?

ଜୟନ୍ତ ।। କୁଆଡ଼ୁ ଆଉ ଆସିଥାଆନ୍ତି ? ଷ୍ଟେସନରୁ !

ମିନା ।। କାଲି ବାଲେଶ୍ୱରର କାମ କ'ଣ ତମର ଏତେ ଚଞ୍ଚଳ ସରିଗଲା ?

ଜୟନ୍ତ ।। କାମଟା ଆଉ କ'ଣ ଥିଲା ? ଗୋଟାଏ ସାଧାରଣ ସଭା—ସେଇଥିରେ ଦୁ'ଘଣ୍ଟା ବକ୍ତୃତା, ଏଇଟା ଗୋଟାଏ କାମ ?

ମିନା ।। କେମିତି ହେଲା ସଭାଟା ? ଲୋକ ହୋଇଥିଲେ ?

ଜୟନ୍ତ ।। ପ୍ରଥମେ ପ୍ରଥମେ ଅବଶ୍ୟ ଲୋକ ଖୁବ୍ କମ୍ ଥିଲେ । ତା'ପରେ ଲାଉଡ଼ସ୍ପିକରରେ ସିନେମା ରେକର୍ଡ ଦି'ଟା ବାଜିଲା ପରେ ଲୋକ ଜମା ହୋଇଗଲେ ।

ମିନା ।। ଆଉ ତା'ପରେ ତମେ ତମର ସ୍ପିଚ୍ ଆରମ୍ଭ କରିଦେଲ, ନା ?

ଜୟନ୍ତ ।। ଆଉ କ'ଣ କରିଥାନ୍ତି ? ସ୍ପିଚ୍ ଦେବା ହିଁ ତ ମୋର କାମ, ତାକୁ ତୁମେ ପେଶା ବି କହିପାର ।

ମିନା ।। କାଲି ଏମିତି ଆଉ କେତେଦିନ ଚାଲିବ କହିଲ ? ଇଆଡ଼େ ତମେ ଭାଇଙ୍କ ବିରୁଦ୍ଧରେ ଯା' ଇଚ୍ଛା ତା କହିବ, ସିଆଡ଼େ ଭାଇ ତମ ନାଁରେ ଯା ଇଚ୍ଛା ତା' କହିବେ, ଏଇଟା କ'ଣ ଲୋକଙ୍କ ଆଖିରେ ସୁନ୍ଦର ଦିଶୁଛି ?

ଜୟନ୍ତ ।। କ'ଣ ଆଉ କରିବ ? କହିଲି ପରା, ଏଇଟା ହେଉଛି ମୋର ପେଶା । ସିଏ ଏମ୍.ପି. ହେଲେ ମୁଁ ବି ତ ଏମ୍. ଏଲ୍. ଏ. । ଭୁଲ ଭୁଲ ବକ୍ତୃତା ନ ଦେଲେ ଚଳିବ କେମିତି ? ଜନସାଧାରଣଙ୍କର ପ୍ରତିନିଧି ଆମେ । ସେମାନଙ୍କ ଦୁଃଖ ଦୁର୍ଦ୍ଦଶା ନ ବୁଝିଲେ, ଆମ ଉପରୁ ସେମାନଙ୍କର ଆସ୍ଥା ତୁଟିଯିବ ନାହିଁ ?

ମିନା ।। ତା' ବୋଲି ଭାଇ ଆଉ ତମ ଭିତରେ ଏମିତି କଳିକଜିଆଟା ମୁଁ ପସନ୍ଦ କରେନା ।

ଜୟନ୍ତ ।। ଆଇଡ଼ିଆଲିଜମ୍ ମିନା, ଆଇଡ଼ିଆଲିଜମ୍ । ଆଇଡ଼ିଆଲିଜମ୍ ଆଗରେ ବାପ-ପୁଅ, ଶ୍ୱଶୁର-ଜ୍ୱାଇଁ, ଏମିତି କି ସ୍ୱାମୀ-ସ୍ତ୍ରୀର ସମ୍ପର୍କ ବି କିଛି ନୁହେଁ ।

ମିନା ।। ଯାହା ତୁମେ ବୁଝୁଛ କର । ମୁଁ ଆଉ କିଛି କହିବି ନାହିଁ । (ଖବର-କାଗଜ ଦେଖାଇ) ଆଜିକାର'କାଗଜ ଦେଖିଛ ?

ଜୟନ୍ତ ।। (ନିରୁତ୍ସାହିତ ସ୍ୱରରେ) କ'ଣ ବାହାରିଛି ?

ମିନା ।। ଭାଇଙ୍କ ସ୍ପିଚ୍ ।

ଜୟନ୍ତ ।। କ'ଣ ଲେଖା ହେଉଛି ?

ମିସା ।। ପୁରୀର ବିରାଟ ଜନସଭାରେ ବକ୍ତୃତା ଦେଇ ସାର କହୁଛନ୍ତି, ତମମାନଙ୍କର କୁଆଡ଼େ ନୈତିକ ଅଧଃପତନ ଘଟିଚି ।

ଜୟନ୍ତ ।। (ରହସ୍ୟମୟ ଭାବରେ ହସି) ବାଲେଶ୍ୱରର ମିଟିଂରେ ତମ ସାରଙ୍କ ବକ୍ତୃତାରେ ମୁଁ ବି ଠିକ୍ ସେଇଆ ଶୁଣିଚି । ସେସବୁ ଛାଡ଼, ତମର ସେଥିରେ ମୁଣ୍ଡ ଖେଳେଇ କିଛି ଲାଭ ନାହିଁ । ତମର ସାର ମୋର ନୈତିକ ଅଧଃପତନ ହେଇଚି ବୋଲି ଖାଲି କହିଦେଲେ ତ ହେବ ନାହିଁ, ଲୋକେ ବିଶ୍ୱାସ କରିବା ଦରକାର । ତମେ ନିଜେ ବିଶ୍ୱାସ କର ସେ କଥା ?

ମିସା ।। ହେଲେ, ସାର କାହିଁକି ତମ ନାଁରେ ଏମିତି କହୁଛନ୍ତି ?

ଜୟନ୍ତ ।। କହିବାର ଅଧିକାର ଅଛି ବୋଲି । ଏଇଟା ତାଙ୍କର ଗୋଟାଏ କନଷ୍ଟି-ଚ୍ୟୁସନାଲ ରାଇଟ୍ ମିସା । ଗଣତାନ୍ତ୍ରିକ ସମ୍ବିଧାନରେ ଏଇଟା ହିଁ ବିଶେଷତ୍ୱ । ହଁ, ତା ବୋଲି ଘର ଭିତରେ ତ ଆମେ କେହି କାହାର ଶତ୍ରୁ ନୋହୁଁ । ଏଇ ନ ହେଇ ଦିନ, କ'ଣ ଗୋଟାଏ ପ୍ରୋବଲେମ୍ ଉପରେ ମୋର ପରାମର୍ଶ ସେ ମାଗିଲେ । ମୁଁ ବି ତ ଅନେକ ଥର ତାଙ୍କର ଆଡ୍‌ଭାଇଜ୍ ନେଇଚି, ଅନେକ କାମରେ । ସେଥିରେ କ'ଣ ଅଛି ? କିନ୍ତୁ ହଁ, ବ୍ୟକ୍ତିଗତ ଭାବରେ ତାଙ୍କର ଏଇ କ୍ୟାପିଟାଲିଷ୍ଟିକ୍ ମେଣ୍ଟାଲିଟି ମୋତେ ଭଲ ଲାଗେନା । ସେ ଚାହାନ୍ତି, ମୁଁ କେମିତି ରାତାରାତି ବଡ଼ଲୋକ ହେଇ ତମକୁ ନେଇ କଣ୍ଟିନେଣ୍ଟାଲ୍ ଟୁର୍‌ରେ ଯାଏଁ । ହେଲେ ମୁଁ, ଆଉ ହେଟ୍ ମନ !

ମିସା ।। ସାର ବୋଧହୁଏ ଠିକ୍ ଏଇଥିପାଇଁ ତମର ନୈତିକ ଅଧଃପତନ ହେଇଚି ବୋଲି କହୁଚନ୍ତି ।

(ପ୍ରବେଶ କଲେ ବୈକୁଣ୍ଠ ପଟ୍ଟନାୟକ । ବୟସ ୪୫ ପାଖାପାଖି । ଦାଢ଼ି ଭଲ ଭାବରେ ଖିଅର ହୋଇଥିଲେ ବି ନିଶଟା ବେଶ ଦର୍ଶନୀୟ । ପୋଷାକ-ପରିଚ୍ଛଦ ସାମାନ୍ୟ ପୁରୁଣାକାଳିଆ)

ବୈକୁଣ୍ଠ ।। ଆରେ ଜୟନ୍ତ ଯେ ! ତମେ କେବେବେଳେ ଆସିଲ ?

ଜୟନ୍ତ ।। ଏଇ ତ, ଏକ୍ସପ୍ରେସ୍‌ରେ ।

ବୈକୁଣ୍ଠ ।। (ମିସା ଆଡ଼କୁ ଅନାଇ) ତୋ ନୂଆବୋଉ କୋଉଠି ମିନ ?

ମିସା ।। ମୁଁ ଦେଖିନାହିଁ ତ ! ଡାକଦେବି ନୂଆବୋଉକୁ ?

ବୈକୁଣ୍ଠ ।। ହଁ ଟିକିଏ ଡାକଦେ । କଥାବାର୍ତ୍ତା ଅଛି ।

(ମିସା ନିଃଶବ୍ଦରେ ବାହାରିଗଲା)

ବୈକୁଣ୍ଠ ।। (ଚୌକିରେ ବସି ଗମ୍ଭୀର ଭାବରେ) ତୁମେ କିଛୁ ଗୋଟାଏ କରୁନା କାହିଁକି, ଜୟନ୍ତ ?

ଜୟନ୍ତ ।। କ'ଣ କହୁଛ ? ହଁ, ମୁଁ ଜଳଖିଆ କରି ଆସିଛି ।

ବୈକୁଣ୍ଠ ।। ଆହା ଜଳଖିଆ ନୁହେଁ, ମୁଁ ଘର କଥା କହୁନାହିଁ । ମୁଁ ତମ କ୍ୟାରିଅର କଥା କହୁଚି ।

ଜୟନ୍ତ ।। ଚଳିଛି ତ ଏକ ରକମର, ଆଜ୍ଞା ।

ବୈକୁଣ୍ଠ ।। (ପ୍ରଚ୍ଛନ୍ନ ବିରକ୍ତିରେ) କ'ଣ ଏଇସବୁ ବକ୍ତୃତା ଦବା କାମ ? ମୁଁ କହୁଚି କ'ଣ କି, ସେସବୁ ଛାଡ଼ି ତମେ ଗୋଟାଏ ଚାକିରି ବାକିରି ଧରୁନା । କହିଲେ, ମୁଁ ପଣ୍ଡେ ମି. ପଣ୍ଡାଙ୍କ ପାଖକୁ ଖଣ୍ଡେ ଚିଠି ଲେଖିଦେବି । ତାଙ୍କର ସେଠି ଡ଼ାଇରେକ୍ଟରର ପୋଷ୍ଟଟା ଏ ପର୍ଯ୍ୟନ୍ତ ଖାଲି ଅଛି ।

ଜୟନ୍ତ ।। ମୁଁ ବର୍ତ୍ତମାନ ଗାଁଗଣ୍ଡା ବୁଲି ସଙ୍ଗଠନମୂଳକ କାମ କରୁଚି । ସେସବୁ ଡ଼ାଇରେକ୍ଟର ପୋଷ୍ଟ ଫୋଷ୍ଟ ମୋ ଦେଇ ହବ ନାହିଁ । ସେସବୁକୁ ମୁଁ ଘୃଣା କରେ ।

ବୈକୁଣ୍ଠ ।। (ବିଦ୍ରୂପ ସହ) ତେବେ ? ତମମାନଙ୍କର ନୈତିକ ଅଧଃପତନ ଘଟିଚି ବୋଲି ପୁରୀ ମିଟିଂରେ ମୁଁ ଯାହା କହିଥିଲି, କ'ଣ କିଛି ଭୁଲ୍ କହିଛି ?

ଜୟନ୍ତ ।। (କୃତ୍ରିମ-ଗାମ୍ଭୀର୍ଯ୍ୟ ସହ) ମୁଁ ବି ଭାବୁଚି ସ୍ତା' ଉତ୍ତରରେ କେବେଅରେ ପୁରୀ ଯିବି—(ପ୍ରବେଶ କଲେ ପ୍ରଭାବତୀ । ପାଚଶାଠ ବିଶେଷ କିଛି ପଡ଼ିନାହାନ୍ତି । ତେବେ ଆଧୁନିକତାର କିଛିଟା ଅଭାସ ଅଛି ତାଙ୍କର ବେଶଭୂଷା ଓ ଚାଲିଚଲନରେ)

ପ୍ରଭା ।। (ଜୟନ୍ତକୁ) କେତେବେଳୁ କ'ଣ ଗଣ୍ଡାଏ ଖାଇଥିବ, ଜଳଖିଆ କିଛି ଆଣେ ।

ଜୟନ୍ତ ।। ନା ନା, ଆଉ, ଆପଣ ବ୍ୟସ୍ତ ହେବେ ନାହିଁ, ମୁଁ ଷ୍ଟେସନରୁ ଏଇ ପାଙ୍ଗେ ପାଙ୍ଗେ ଜଳଖିଆ ଖାଇ ଆସୁଚି ।

ପ୍ରଭା ।। ଖାଇକରି ଆସିଛ ? ତେବେ ଆଉ କିଛି ଖାଇବ ନାହିଁ ? (ବୈକୁଣ୍ଠକୁ) ହଁ, କାହିଁକି ଡ଼ାକୁଥିଲ ମତେ ?

ବୈକୁଣ୍ଠ ।। (ଇତସ୍ତତଃ ହୋଇ) ହଁ, ଡାକୁଥିଲି ଯେ, କଥା କ'ଣ କି (ଜୟନ୍ତର ଉପସ୍ଥିତିକୁ ଲକ୍ଷ୍ୟ କରି) ଜୟନ୍ତ, ତମେ ଟିକିଏ ରେଷ୍ଟ୍ ନବ ନାହିଁ ଭିତରକୁ ଯାଇଁ ?

ଜୟନ୍ତ ।। (ସନ୍ଦେହ ଭାବରେ) ରେଷ୍ଟ୍ ? ଓ, ହଁ, ମିଣା କୁଆଡ଼େ ଗଲା ? ତା' ପାଖରେ ମୋର କେତେଗୁଡ଼ାଏ ଦରକାରୀ କାଗଜପତ୍ର ଥିଲା । ଦେଖେ । (ଭିତରକୁ ଯିବାର ଉପକ୍ରମ କଲା)

ବୈକୁଣ୍ଠ ।। ହଁ, ଜୟନ୍ତ, ତମେ ଭିତରେ ଅଛ ତ ? ଗୋଟାଏ ଦରକାରୀ ବିଷୟରେ ତମ ସାଙ୍ଗରେ ମୋର ପରାମର୍ଶ କରିବାର ଅଛି ।

ଜୟନ୍ତ ।। ହଁ, ମୁଁ ଅଛି । (ଭିତରକୁ ଚାଲିଗଲା)

ବୈକୁଣ୍ଠ ।। (ଉଦ୍‌ବିଗ୍ନ ଭାବରେ) ବସ ପ୍ରଭା, ତମ ସାଙ୍ଗରେ ଖୁବ୍ ଦରକାରୀ କଥାବାର୍ତ୍ତା ଅଛି ।

ପ୍ରଭା ।। (ବସି) କୁହ ।

ବୈକୁଣ୍ଠ ।। ଆଜି ଖରାବେଳେ ଡାକରେ ଏ ଚିଠିଟା ଆସିଚି । ଶୁଣ, ମୁଁ ପଢ଼ିଦେଉଚି । (ପଢ଼ିଲେ) "ବ୍ରହ୍ମପୁର, ୨୯-୯-୬୮ । ପ୍ରିୟ ମହାଶୟ, ଆପଣ ଶୁଣି ଖୁସି ହେବେ ଯେ, ସ୍ୱର୍ଗତ ଶ୍ରୀଯୁକ୍ତ ରବିଶଙ୍କର ମର୍ଦ୍ଦରାଜ ମହାଶୟ, ତାଙ୍କର ଉଇଲରେ ଆପଣଙ୍କ ନାମରେ ଦୁଇଲକ୍ଷ ଟଙ୍କା ଗଚ୍ଛିତ ରଖି ଯାଇଛନ୍ତି ।"

ପ୍ରଭା ।। ଦୁ—ଦୁଇ ଲକ୍ଷ ?

ବୈକୁଣ୍ଠ ।। ଆହୁରି ଅଛି ଶୁଣ । (ପଢ଼ିବାକୁ ଆରମ୍ଭ କରି) "କିନ୍ତୁ ଏଥିପାଇଁ ସେ ଏକ ସାମାନ୍ୟ ସର୍ତ୍ତ ରଖିଯାଇଛନ୍ତି । ସର୍ତ୍ତଟି ହେଉଛି, ଉଲ୍ଲିଖିତ ଟଙ୍କା ପାଇବାକୁ ହେଲେ, ଆପଣଙ୍କୁ ଆପଣଙ୍କ ନାମ ଶେଷରେ 'ଗଜ ଗୋବର୍ଦ୍ଧନ ସିଂ' ଉପାଧିଟି ଗ୍ରହଣ କରିବାକୁ ହେବ ।

ପ୍ରଭା ।। ଏଁ —

ବୈକୁଣ୍ଠ ।। "ଇତି—ବଶମ୍ବଦ—ମଣୀଶଙ୍କର ମର୍ଦ୍ଦରାଜ, ଓକିଲ ।" (ଚିଠିଟିକୁ ଲଫାପାରେ ପୂରେଇ ରଖିଦେଲେ ।)

ପ୍ରଭା ।। ହେଲେ, ଏ ଉଇଲ୍ କଲାବାଲା ଲୋକଟା କିଏ ?

ବୈକୁଣ୍ଠ ।। ମୁଁ କିଛି ଜାଣେନା ପ୍ରଭା ! ଓକିଲ ଭଦ୍ରଲୋକଙ୍କୁ ମୁଁ ଟେଲିଗ୍ରାମ କରିଛି, ଆସି ପହଞ୍ଚିବାକୁ । ଯେ କୌଣସି ମୁହୂର୍ତ୍ତରେ ଆସି ହେଞ୍ଚିଯାଇ ପାରନ୍ତି ।

ପ୍ରଭା ।। (ପୁଲକିତ ହୋଇ ମନକୁ ମନ) ଦୁଇଲକ୍ଷ—ହେ ପ୍ରଭୁ, ଏତେ ଟଙ୍କା !

ବୈକୁଣ୍ଠ ।। (ଶୁଷ୍କ ସ୍ୱରରେ) ହଁ, ତା' ସାଙ୍ଗରେ 'ଗଜ ଗୋବର୍ଦ୍ଧନ ସିଂ' ବି । (ମନକୁ ମନ ଉଚ୍ଚାରଣ କରି) ଶ୍ରୀଯୁକ୍ତ ବୈକୁଣ୍ଠ ନାଥ ଗଜ ଗୋବର୍ଦ୍ଧନ ସିଂ, ଏମ୍ ସି ! କେମିତି ଶୁଭୁଛି ନା ଟା ?

ପ୍ରଭା ।। ନା—ନା—ସେ କଥା କେବେ ହୋଇ ନ ଥିବ । ଟଙ୍କା ତ ନବ, ଆଉ ଏ 'ଗଜ-ରାଜ-ବର୍ଦ୍ଧନ' ଗୋଟାଏ ପୁଣି କ'ଣ ?

ବୈକୁଣ୍ଠ ।। (ସଂଶୋଧନ କରି) 'ଗଜ ଗୋବର୍ଦ୍ଧନ ସିଂ' ପ୍ରଭା, ଗଜ ଗୋବର୍ଦ୍ଧନ ସିଂ !

ପ୍ରଭା ॥ ସେ ଯାହାହେଉ, ତମେ ଆଚ୍ଛା କରି ତ'ପର ଲେଖି ଦେଇନା—
ଏସବୁ ବର୍ଜନ ଫର୍ଜନ ହୋଇପାରିବ ନାହିଁ ବୋଲି ।

ବୈକୁଣ୍ଠ ॥ ତୁମେ ବୁଝିପାରୁନା ପ୍ରଭା, ଏସବୁ ଆଇନ୍ କାନୁନ୍ କଥା ।

ପ୍ରଭା ॥ ହଁ ହଁ, ମୁଁ ସବୁ ବୁଝିଛି । ତମେ ସେ ଓକିଲଙ୍କୁ ଫଙ୍କା ଖୋଲି ଲେଖିଦେଇଅ ଯେ, ତମେ ଟଙ୍କା ନେବାକୁ ରାଜିଅଛ, ହେଲେ ନାଁ ବଦଳାଇ ପାରିବ ନାହିଁ । ତମ ନାଁ ଭଳି ଦେଶଟାଯାକ କିଏ ନ ଜାଣେ, କହିଲ ?

ବୈକୁଣ୍ଠ ॥ ହେଲେ ସର୍ତ୍ତଟା ସବୁ ଅଛି ! ଶ୍ରୀଯୁକ୍ତ ରବଣଙ୍କର ମର୍ଦ୍ଦରାଜଙ୍କର ଦୁଇ ଲକ୍ଷ ଟଙ୍କା ମୁଁ ଯେତେବେଳେ ପାଇବି, ସେତେବେଳେ ନାଁଟା ବଦଳେଇବି, ତା' ଆଗରୁ ନୁହେଁ ।

ପ୍ରଭା ॥ ଇମିତି କ'ଣ ହୁଏଚି, ଆଉ କୋଉଠି ?

ବୈକୁଣ୍ଠ ॥ ବହୁତ ଜାଗାରେ ଲୋକେ ସମ୍ପତ୍ତି ବାଡ଼ି ପାଇଁ ନିଜର ନାଁ ବଦଳାଇବାର ଅନେକ ଦୃଷ୍ଟାନ୍ତ ଅଛି ।

ପ୍ରଭା ॥ ହେଲେ—ସିଏ—ତମ ନାଁରେ—ଏତେଗୁଡ଼ାଏ ଟଙ୍କା…ମୁଁ ତ କିଛି ବୁଝିପାରୁନି ।

ବୈକୁଣ୍ଠ ॥ (ଯବଙ୍କ ଭଳି ଗମ୍ଭୀର ସ୍ୱରରେ) ମୁଁ ସବୁ ବୁଝିପାରୁଛି । କଥାଟା ହେଉଛି, ଏଇ ଭଦ୍ରଲୋକ ବୋଧହୁଏ, ଠିକ୍ ମୋ' ପରି ଜଣେ ନିଷ୍ଠାପର ଦେଶସେବୀ ଥିଲେ । ମରିବାବେଳେ ଆଉ କୌଣସି ଉପଯୁକ୍ତ ଉତ୍ତରାଧିକାରୀ ନ ପାଇ ଟଙ୍କାତକ ମୋତେ ହିଁ ଦେଇଯାଇଛନ୍ତି । ଆଉ ଏଇ ରାଜ ଗୋବର୍ଦ୍ଧନ ସିଂ ନାଁଟା । ସେଟା ନିଶ୍ଚୟ ତାଙ୍କର ବଂଶର, କାହାର ବା କାହାର ହୋଇଥିବ । ଲୋକଙ୍କ ମନରେ ସେଇ ନାଁ'ଟାକୁ ଜୀଆଇଁ ରଖିବା ପାଇଁ ବୋଧହୁଏ ଏମିତି ଗୋଟାଏ ଉଇଲ୍ କରିଦେଇ ଯାଇଛନ୍ତି । ତାଙ୍କର ଧାରଣା, ମୋତେ ଅନେକ ଲୋକ ଜାଣନ୍ତି ନା, ରାଜ ଗୋବର୍ଦ୍ଧନ ସିଂ ଟାଇଟଲଟା ମୁଁ ନେଲେ ନାଁଟାର ଗୋଟାଏ ବିରାଟ ପବ୍ଲିସିଟି ହେବ ।

ପ୍ରଭା ॥ ତେବେ କ'ଣ ତୁମେ ରାଜି ହେଉଛ, ନାଁଟା ନବାକୁ ?

ବୈକୁଣ୍ଠ ॥ କ'ଣ କରିବି କିଛି ଠିକ୍ କରି ପାରୁନି । ଇଆଡ଼େ ମୋ ବଂଶପରମ୍ପରା, ଖ୍ୟାତି । ସିଆଡ଼େ ଜନସାଧାରଣଙ୍କ ପ୍ରତି କର୍ତ୍ତବ୍ୟ ।

ପ୍ରଭା ॥ (ଉଚ୍ଛ୍ୱସିତ ସ୍ୱରରେ) ଟଙ୍କାଟା ମିଳିଲେ ଆମର ସବୁ ସୁବିଧା ହୁଅନ୍ତା । ନୂଆ ଘରଟା ବ୍ରିଜମହଲ କରି ଏଇ ବର୍ଷକ ଭିତରେ ଆମେ ସେଇଠିକି ଉଠିଯାଆନ୍ତେ ।

ବୈକୁଣ୍ଠ ।। ମୁଁ ସବୁ ବୁଝିଛି ପ୍ରଭା ! ହେଲେ, ଏଇ ଲୋକମୁଣ୍ଡାଙ୍କ କଥା ତ ଜାଣିଛ ? କ'ଣ ନାଁରେ କ'ଣ ଭାବିବେ । ଏତେଗୁଡ଼ାଏ ଟଙ୍କା, କାହାର ହଜମ ସମ୍ଭବ ନାହିଁ ।

ପ୍ରଭା ।। (ବୈକୁଣ୍ଠଙ୍କ କଥାରେ କର୍ଣ୍ଣପାତ ନ କରି) ଆଉ ଗୋଟାଏ ନୂଆ ଗାଡ଼ି କିଣିବ ବୋଲି କହୁଥିଲ, ସେଟା ବି କିଣିପାରନ୍ତ ।

ବୈକୁଣ୍ଠ ।। ହଁ, ସେ କଥାଟା ଠିକ୍ । ଧର, ଟଙ୍କାଟାକୁ ମୁଁ ନେଲି; କିନ୍ତୁ 'ଗଜ ଗୋବର୍ଦ୍ଧନ ସିଂ', ସେଟାକୁ ନେଇ କ'ଣ କରିବି ?

ପ୍ରଭା ।। ହଁ ସ, ଦିନାକେତେ ଗଲେ ନାଁଟା ବଳେ ପଡ଼ିଛି ଯିବ ନାହିଁ । ମୋ ବାହାଘର ଆଗରୁ ମୁଁ ତ ପୁଣି ପ୍ରଭାବତୀ ମହାନ୍ତି ଥିଲି । ଏବେ ହେଇଚି ପଟ୍ଟନାୟକ । କ'ଣ ହେଇଗଲା ସେଇଠୁ ? ଭୋଟିଠି ଭଲ ଦିନେ ସତେ ନାଁଟା ଦସ୍ତଖତ କରିବାକୁ ପଡ଼ୁଛି ?

ବୈକୁଣ୍ଠ ।। ତମମାନଙ୍କ କଥା ଅଲଗା । ଇଏ ତ ଜଣାଶୁଣା କଥା ଯେ, ଦିନେ ନା ଦିନେ ବାହାହେଲେ ନାଁଟା ବଦଳିବ । ହେଲେ, ଏବେ ମୁଁ ନାଁଟା ବଦଳେଇ ଦେଲେ ଲୋକେ ସତେ ଚିହ୍ନିପାରିବା ମୁସ୍କିଲ ହେଇଯିବ, ପ୍ରଭା ! କହିବେ ଏ 'ଗଜ ଗୋବର୍ଦ୍ଧନ ସିଂ' ପୁଣି କିଏ ?

ପ୍ରଭା ।। ହେଲେ, ଏତେଗୁଡ଼ାଏ ଟଙ୍କା ଯେ ପାଇବ ?

ବୈକୁଣ୍ଠ ।। ମୁଁ ତା' ବି ବୁଝୁଛି ପ୍ରଭା । ମୁଁ ମାନୁଚି, ଟଙ୍କାଟା ନେବା ମୋର କର୍ତ୍ତବ୍ୟ । ହେଲେ କିଏ କ'ଣ କରିବ ? ଭଦ୍ରଲୋକ ଏମିତ ଗୋଟାଏ ସର୍ତ୍ତ ରଖିଦେଇ ମରିଛନ୍ତି ଯେ, 'ଗଜ ଗୋବର୍ଦ୍ଧନ ସିଂ' ନ ହେଲା ପର୍ଯ୍ୟନ୍ତ ଦୁ'ଲକ୍ଷ ଟଙ୍କା ମିଳିବାର କୌଣସି ସମ୍ଭାବନା ନାହିଁ । (କିଛିଏ ଚିନ୍ତା କରି) ଅଚ୍ଛା ପ୍ରଭା, ମୁଁ ଆମ ଜୟନ୍ତ ସାଙ୍ଗରେ କିଛିଏ ପରାମର୍ଶ କରେ । ଦେଖାଯାଉ ସିଏ କ'ଣ କହୁଚି ।

ପ୍ରଭା ।। (ଛଟିପଟି) ତା' ସାଙ୍ଗରେ ଗୋଟାଏ କ'ଣ ପରାମର୍ଶ କରିବ ସ ? ତମେ ଯା' ଠିକ୍ ଭାବୁଚ କର । ହେଲେ ଜୟନ୍ତୀଟାର କଥାରେ ମାତି ଦୁ' ଦୁ' ଲକ୍ଷଟଙ୍କା ଯେମିତ ଛାଡ଼ିଦେଇ ନବସ ! ବୁଝିଲ ? ମୁଁ ଡ଼ାକିଦଉଚି ତାକୁ ।

ବୈକୁଣ୍ଠ ।। (ପ୍ରଭାକୁ ଅଟକାଇ) ତମେ କ'ଣ କହୁଚ ପ୍ରଭା ?

ପ୍ରଭା ।। କହିଲି ସିନା, ତମେ ଯା' ଠିକ୍ ଭାବୁଚ କର ।

(ପ୍ରଭା ଚାଲିଗଲେ, ବୈକୁଣ୍ଠ ବଡ଼ ଚିନ୍ତାନ୍ୱିତ ଭାବରେ କିଛି ସମୟ ପଦଚାରଣ କଲେ, ତା' ପରେ ଅନ୍ୟମନସ୍କ ଭାବରେ ଖବରକାଗଜଟା ଦେଖିଲେ । ନିଃଶବ୍ଦରେ ପ୍ରବେଶ କଲା ଜୟନ୍ତ)

ଜୟନ୍ତ ।। ଏ କଥା କ'ଣ ସତ ?

ବୈକୁଣ୍ଠ ।। କୋଉ କଥା ?

ଜୟନ୍ତ ।। ସେ ଦ' ଲକ୍ଷ ଟଙ୍କା ଆପଣ ପାଇବେ ?

ବୈକୁଣ୍ଠ ।। ହଁ, କିଏ ଜଣେ ରବିଶଙ୍କର ସର୍ବସ୍ୱ ଉଇଲ କରିଦେଇ ଯାଇଛନ୍ତି । ମୁଁ ତାଙ୍କ ନାଁ ଜୀବନରେ କେବେ ଶୁଣିନାହିଁ ।

ଜୟନ୍ତ ।। (ଆଶ୍ଚର୍ଯ୍ୟ ହେବାର ଭଙ୍ଗୀ କରି) ଶୁଣି ନାହାନ୍ତି ? ସତେ ! ଛାଡ଼ନ୍ତୁ ସେ କଥା । ଇଏ ତ ମସ୍ତବଡ଼ ଗୋଟାଏ ସୌଭାଗ୍ୟ । ହେଲେ—ମୁଁ ଆପଣଙ୍କୁ କ'ଣ ଗୋଟାଏ ପରାମର୍ଶ ଦେବି ?

ବୈକୁଣ୍ଠ ।। ସେଥିରେ ସାମାନ୍ୟ ଗୋଟାଏ ସର୍ତ୍ତ ଅଛି ।

ଜୟନ୍ତ ।। ସର୍ତ୍ତ ? କି ସର୍ତ୍ତ ?

ବୈକୁଣ୍ଠ ।। ସର୍ତ୍ତଟା ହେଉଛି ଯେ, ଟଙ୍କା ସାଙ୍ଗରେ—ମାନେ—ସେଇ ଦ' ଲକ୍ଷ ଟଙ୍କା ସାଙ୍ଗରେ—ମୋତେ 'ଗଜ ଗୋବର୍ଦ୍ଧନ ସିଂ' ନାଁଟା ବି ନେବାକୁ ହେବ ।

ଜୟନ୍ତ ।। (ପ୍ରାୟ ଚେଇଁପଡ଼ି) କ'ଣ କହିଲେ ?

ବୈକୁଣ୍ଠ ।। 'ଗଜ ଗୋବର୍ଦ୍ଧନ ସିଂ' !

(ଜୟନ୍ତ କିଛି ସମୟ ଭାବିଲା, ତା'ପରେ ମନକୁମନ)

ଜୟନ୍ତ ।। ହଁ, ଶ୍ରୀଯୁକ୍ତ ବୈକୁଣ୍ଠନାଥ ଗଜ ଗୋବର୍ଦ୍ଧନ ସିଂ, ଏମ୍. ପି. । ଆହାଃ ଚମତ୍କାର, ହେଭେନ୍ଲି !

ବୈକୁଣ୍ଠ ।। ତମେ ଟିକିଏ ସିରିଅସ୍ ହୁଅ ଜୟନ୍ତ ! ନା' ନ ହେଲେ ଏ ସମ୍ପର୍କରେ ଆଲୋଚନା କରି କିଛି ଲାଭ ହେବ ନାହିଁ ।

ଜୟନ୍ତ ।। ସିରିଅସ୍ ହେବି ? 'ଗଜ ଗୋବର୍ଦ୍ଧନ ସିଂ' ପରି ଗୋଟାଏ ନାଁ ବିଷୟରେ ଆପଣ ଆଲୋଚନା କରିବେ, ଆଉ ମୁଁ ସିରିଅସ୍ ହେବି ? (ହସିପକାଇ) ଗଜ ଗୋବର୍ଦ୍ଧନ ସିଂ ! (ଅନୁକୃତି କରିବା ଢଙ୍ଗରେ) ପୁରୀର ସାଧାରଣ ସଭାରେ ଭାଷଣ ଦେଇ ପାର୍ଲମେଣ୍ଟର ବିଶିଷ୍ଟ ସଭ୍ୟ ଶ୍ରୀଯୁକ୍ତ ବୈକୁଣ୍ଠନାଥ ଗଜ ଗୋବର୍ଦ୍ଧନ ସିଂ କହିଲେ—(ହସିଉଠିଲା) ଖବର-କାଗଜରେ ତ ପୁଣି ବାହାରିବ ।

ବୈକୁଣ୍ଠ ।। (ଶୁଷ୍କ ସ୍ୱରରେ) ତମେ ତେବେ ଧରିନେଇ ପାରିଚ ଯେ, ଟଙ୍କାଟା ମୁଁ ନେଉଚି !

ଜୟନ୍ତ ।। ସେ ବିଷୟରେ ମୁଁ ନିଃସନ୍ଦେହ ।

ବୈକୁଣ୍ଠ ।। ତମେ ! ତମେ ହୋଇଥିଲେ ନିଅନ୍ତ ନାହିଁ ?

ଜୟନ୍ତ ।। (ନିଃସଂଶୟ ଭଙ୍ଗୀରେ) ଠିକ୍ କହି ପାରୁନାହିଁ ।

ବୈକୁଣ୍ଠ ॥ ସେକ୍‌ସପିଅର ତ କହିଛନ୍ତି—ହ୍ୱାଟ୍ ଇଜ୍ ଇନ୍ ଏ ନେମ୍ !

ଜୟନ୍ତ ॥ ତେବେ ଆଉ ଅସୁବିଧା କ'ଣ ? ସେକ୍‌ସପିଅର ଯେତେବେଳେ କହିଛନ୍ତି—ଆପଣ ନଅନ୍ତୁ ନାଁଟା—

ବୈକୁଣ୍ଠ ॥ ଆଚ୍ଛା; ନାଁ'ଟାକୁ ତମେ ଏତେ ଅପସନ୍ଦ କରୁଛ କାହିଁକି ? କହିଲ ? ଜାଣିଛ, ଗଞ୍ଜାମର ଗୋଟାଏ ବଡ଼ଟ ଜମିଦାର ବଂଶର ନାଁ ସେଇଟା । ଆମ ପିଲାବେଳେ ସେଇ ରାଜ ଗୋବର୍ଦ୍ଧନ ସିଂ ମାନେ ହିଁ ତ ସବଠୁଁ ବଡ଼ ଫ୍ୟାମିଲି ଥିଲେ ଓଡ଼ିଶାର । ସେମାନଙ୍କର ସ୍ମୃତିକୁ ବଞ୍ଚାଇ ରଖିବାକୁ ମୁଁ ଯଦି ଏଇ ନାଁଟା ନଏ, କ୍ଷତି କ'ଣ ?

ଜୟନ୍ତ ॥ ନା ନା, କ୍ଷତି ଆଉ କ'ଣ ? ପୁଣ୍ୟ ସଞ୍ଚୟ ହେବ । (ହଠାତ୍ ସ୍ୱର ବଦଳାଇ, ତୀକ୍ଷ୍ଣ କଣ୍ଠରେ) ଆପଣଙ୍କର ଉଦ୍ଦେଶ୍ୟଟା କ'ଣ ?

ବୈକୁଣ୍ଠ ॥ କି ଉଦ୍ଦେଶ୍ୟ ?

ଜୟନ୍ତ ॥ ବୁଝିପାରିଲେ ନାହିଁ ? ଏଇ ଧରନ୍ତୁ, ରାସ୍ତାରେ ଯାଉଁ ଯାଉଁ ହଠାତ୍ ଗୋଟିଏ ଲୋକ ଯଦି ଆସି ଆପଣଙ୍କୁ କହିଲା—ଆଜ୍ଞା ବାବୁ, ଏଇ ନିଅ ପାଞ୍ଚଟା ଟଙ୍କା, ଆପଣ କ'ଣ କରିବେ ? ନିଶ୍ଚେ ତାକୁ ଖୁବ୍ ଗାଳି ଫଜିତ୍ କରି ଘଉଡ଼େଇ ଦେବେ । ଦେବେ ନା ନାହିଁ ?

ବୈକୁଣ୍ଠ ॥ ସେ କଥା ଠିକ୍ ଯେ; କିନ୍ତୁ ମୁଁ ରାସ୍ତାର ଲୋକଠୁ ଟଙ୍କା କାହିଁକି ନବାକୁ ଯିବି ?

ଜୟନ୍ତ ॥ ମୁଁ ବୁଝୁଛି । ନ ହେଲା ଏବେ, ପାଞ୍ଚଟଙ୍କା ନ ଯାଚି, ଯାଚିଲା ହଜାରେ ଟଙ୍କା, ଆପଣ ନେବେ ?

ବୈକୁଣ୍ଠ ॥ (ପ୍ରତିବାଦ କରି) କେବେ ନୁହେଁ । ଇମ୍ପସିବ୍‌ଲ !

ଜୟନ୍ତ ॥ କିନ୍ତୁ ସିଏ ଯଦି ମରିଗଲା ପରେ ଟଙ୍କାତକ ଆପଣଙ୍କ ନାଁରେ ଲେଖି-ଦେଇଯାଏ, ତେବେ ?

ବୈକୁଣ୍ଠ ॥ ଓହୋ, ବୁଝିଲି । ତମେ ଯେ ଶେଷକୁ ଏଇଆ କହିବ, ମୁଁ ଆଗରୁ ଜାଣିଥିଲି ।

ଜୟନ୍ତ ॥ ଜାଣିଥିଲେ ?

ବୈକୁଣ୍ଠ ॥ ହଁ, ଜାଣିଥିଲି । ଆଚ୍ଛା, ତମେ ତ ଭାରି ବଡ଼ ବଡ଼ କଥା କହୁଚ, ତମେ ହୋଇଥିଲେ, ନଅନ୍ତ ନାହିଁ ?

ଜୟନ୍ତ ॥ ନଅନ୍ତି ନାହିଁ ? ନିଶ୍ଚୟ ନଅନ୍ତି ; କିନ୍ତୁ ମୁଁ ବୁଝି ପାରୁନାହିଁ, ଜଣେ ଲୋକ ମରିଗଲା ପରେ ହିଁ ଆପଣ କାହିଁକି ଟଙ୍କା ନେବେ ? ବଞ୍ଚିଥିବା ଅବସ୍ଥାରେ କାହିଁକି ନ ନେବେ ?

ବୈକୁଣ୍ଠ ।। ଓହୋ, ଏଇ କଥା ? ତେବେ ଶୁଣ, ବୁଝେଇ ଦଉଚି । ଗୋଟାଏ ଲୋକ ବଞ୍ଚିବା ଅବସ୍ଥାରେ ତା' ପାଖରେ ଯେତେ ଟଙ୍କା ଥାଉ ପଛକେ, ସେଟା ତା'ର ଟଙ୍କା । ସେ ଚାହିଁଲେ ତାକୁ ଅକ୍ଲେଶରେ ଖର୍ଚ୍ଚ କରି ପାରିବ । ସେତେବେଳେ ତା ପାଖରୁ ଦାନ ନବାଟା ନିହାତି ଭିକ୍ଷାଗ୍ରହଣ ପରି ମନେ ହେବ; କିନ୍ତୁ ଥରେ ମରିଗଲା ପରେ, ତା'ର ଆଉ ଟଙ୍କାର ଦରକାର ନାହିଁ । ସେତେବେଳକୁ ଟଙ୍କା ନେବାକୁ ମନା କରିବାଟା କେବଳ ବୋକାମି ନୁହେଁ, ଦୁର୍ଗତ ଆତ୍ମା ପ୍ରତି ଅବିଚାର ହେବ ।

ଜୟନ୍ତ ।। ସତେ ? ଲୋକଟା ବିତ୍ତର ମନୋଜାତ ବୋଲି ସିଏ ଦୟା କରିବା ବଦଳରେ ଆପଣ ଦୟାକରି ଟଙ୍କାତକ ନେବେ, ନୁହେଁ ?

ବୈକୁଣ୍ଠ ।। କଥାଟାକୁ ଖାଲି ଗଣ୍ଡଗୋଳିଆ କରିଦଉଚ ଜୟନ୍ତ ।

ଜୟନ୍ତ ।। ଆଚ୍ଛା, ସେ କଥା ଛାଡ଼ନ୍ତୁ । ଧରନ୍ତୁ, ରାସ୍ତାରେ ହଠାତ୍ ଗୋଟାଏ ପୁରାପୂରି ଅଜଣା ଅଶୁଣା ଲୋକ ଆପଣଙ୍କୁ ଦେଖି ଆପଣଙ୍କ ଚେହେରା ପସନ୍ଦ କଲା ନାହିଁ । ଦଶଟା ଟଙ୍କା ଦେଇ ଆପଣଙ୍କୁ କହିଲା, ନିଶଟା ମୂଳରୁ ଉପାଡ଼ି ଦେଇ ମୁଣ୍ଡବାଳ ଗ୍ରେଟ ଗ୍ରେଟ କରି କାଟି ଗୋଟାଏ ଚୂଟି ରଖିବାକୁ । ଆପଣ ରାଜି ହେବେ ?

ବୈକୁଣ୍ଠ ।। (ଉତ୍ତ୍ୟକ୍ତ ହୋଇ) ଜୟନ୍ତ, ଜଗିରଖି କଥାବାର୍ତ୍ତା କର—ମୁଁ ତମର ମାନେ—

ଜୟନ୍ତ ।। ନ ହେଲା ଏବେ, ଦଶଟଙ୍କା ନ ହଉ ଯାଉଛି ଶହେଟଙ୍କା ଲକ୍ଷେ ଟଙ୍କା, ଦୁ' ଲକ୍ଷ ଟଙ୍କା ! କ'ଣ ଯାଏ ଆସେ ସେଥିରେ ? ଅସଲ କଥା ହେଉଚି, ଦର । ଯାହାର ଯେମିତି ଦର । ଚାରି ମହଲା କୋଠା କରିବେ । ଦୁ'ଧଟା ମଟର କିଣିବେ, ଡଜନେ ଚାକର ଚୂକାଣି ରଖିବେ । ହେଲା ଏବେ, ନାଁ ଟା 'ରାଜ ଗୋବର୍ଦ୍ଧନ ସିଂ' । ମୃତଆତ୍ମା ପ୍ରତି ସମ୍ମାନ ଦେଖାଇବାଟା ତ ହେଲା ।

ବୈକୁଣ୍ଠ ।। ନାଃ, ଆଉ ବେଶି କଥାବାର୍ତ୍ତା କରି କିଛି ଲାଭ ନାହିଁ । (ଉଠି ଠିଆ-ହେଲେ) ରାଜ ଗୋବର୍ଦ୍ଧନ ସିଂ ନାଁଟା ତମକୁ ଭଲ ନ ଲାଗିପାରେ ଜୟନ୍ତ, ହେଲେ ଏତେ ବଡ଼ ମୋଟା ଟଙ୍କା ଜାଣିଶୁଣି ଏଇ ସାମାନ୍ୟ କାରଣରେ ହାତଛଡ଼ା କରିବାଟା ଠିକ୍ ହବ ନାହିଁ ।

ଜୟନ୍ତ ।। ଆପଣଙ୍କର ସବୁବେଳେ ଖାଲି ସେଇ ଟଙ୍କା — ଟଙ୍କା । ଟଙ୍କା ଛଡ଼ା ଦୁନିଆରେ ଯେମିତି ଆଉ କିଛି ନାହିଁ । ଏଇଥିଲାଗି ତ ମୁଁ ଟଙ୍କାକୁ ଘୃଣା କରେ ।

ବୈକୁଣ୍ଠ ।। ଆହା, ତମେ ମିଛଟାରେ ଏତେ ବ୍ୟସ୍ତ ହେଉଛ ଜୟନ୍ତ ? ତମେ ପିଲ୍‌ଲେକ୍ ସାମାନ୍ୟ ଗୋଟାଏ ନାଁ ବଦଳରେ ଦ'ଲକ୍ଷ ଟଙ୍କା ଛାଡ଼ିଦେବା ତମ ଅଗରେ ପିଲଖେଳ ହୋଇପାରେ, ମୋ ଆଗରେ ନୁହେଁ । ମୁଁ ତମଠୁ ବହୁତ ବେଶି ପ୍ରାକ୍‌ଟିକାଲ ! ତମେ କ'ଣ ଭାବୁଛ ? ନାଁଟା ବଦଳେଇ ଦେଲେ, ମୋର ରେପୁଟେସନ୍ ଉପରେ ଆଞ୍ଚ ଆସିବ ?

ଜୟନ୍ତ ।। (ବଦ୍ରୁପକଣ) ନା, ତା' ଆଉ କୁଆଡୁ ଆସିବ ? ଆମପରି ନୈତିକ ଅଧଃପତନ ଯେଉଁମାନଙ୍କର ଘଟିଛି,—ସେମାନେ ଆପଣଙ୍କୁ ଖୁବ୍ ପ୍ରଶଂସା କରିବେ । (କର୍କଶ ସ୍ୱରରେ) ପଣପଣ କାରେ ଭାଟ୍ ନ୍ ବାହାରିବ—(ଏଇପରି ଏକ ଅସ୍ୱସ୍ତିକର ମୁହୂର୍ତ୍ତରେ ପ୍ରବେଶ କଲେ ପ୍ରଭାବତୀ)

ପ୍ରଭା ।। (ବୈକୁଣ୍ଠଙ୍କୁ) ଜସ୍ମୀ, ଶୁଣିଚ ସବୁ ?

ଜୟନ୍ତ ।। ଏମିତିକା ସୁଯୋଗ ଛାଡ଼ିବା ଉଚିତ ନୁହେଁ—

ପ୍ରଭା ।। ଯା'ହେଉ, ମୋ ମନରୁ ମସ୍ତବଡ ଗୋଟାଏ ବୋଝ ଓହ୍ଲାଇଗଲା ।

ବୈକୁଣ୍ଠ ।। (ଘଣ୍ଟା ଦେଖି) ଓକିଲ ଭଦ୍ରଲୋକ ଆସିବାର ସମୟ ହୋଇଗଲା । ଦେଖାଯାଉ, ତାଙ୍କୁ ଧରାଧରି କରି ଏ ସମ୍ପର୍କରେ କିଛି ଗୋଟାଏ ଯଦି ···(ପ୍ରବେଶ କରିଛି ମିଲା)

ମିଳା ।। ଆଚ୍ଛା, ତମମାନଙ୍କର ସବୁ କଣ ହୋଇଚ କହିଲ ? ଚୁପ୍‌ଚାପ୍ ବସି କଣ କଥାବାର୍ତ୍ତା ଏତେ ଗୁଣ୍ଡୁଳିଚ ?

ପ୍ରଭା ।। (ବୈକୁଣ୍ଠଙ୍କୁ) ମିନା କ'ଣ କିଛି ଶୁଣି ନାହିଁ—?

ବୈକୁଣ୍ଠ ।। ମୁଁ କହିନାହିଁ ତ— ,

ପ୍ରଭା ।। ଭାଇ କିଛି ଟଙ୍କା ପାଇବେ ଲୋ ମିନା—

ଜୟନ୍ତ ।। ହଁ, ଖାଲି ନାଁଟା ଥରେ ବଦଳିଗଲେ—

ମିଳା ।। (ହାତତାଳି ମାରି ଉଚ୍ଛ୍ୱସିତ ଭାବରେ) ହାଉ ଥ୍ରିଲିଙ୍ଗ୍ ! ନାଁଟା କ'ଣ ନୂଆ ହୋଉ ?

ପ୍ରଭା ।। (ବୈକୁଣ୍ଠଙ୍କୁ) କ'ଣ କହୁଥିଲ ତ ନାଁଟା ? ପୋଡ଼ା ନାଁଟା କ'ଣ ମନେରଖି ହଉଚ !

ବୈକୁଣ୍ଠ ।। (ସ୍ୱର ଯଥାସମ୍ଭବ ସଯତ କରି) 'ଗଜ ଗୋବର୍ଦ୍ଧନ ସିଂ'—

ମିଳା ।। (ବୁଝି ନ ପାରି) କହୁନା ଭାଇକ ମ ଭାଉ—

ବୈକୁଣ୍ଠ ।। (ଗମ୍ଭୀର ସ୍ୱରରେ) କହିଲି ତ, 'ଗଜ ଗୋବର୍ଦ୍ଧନ ସିଂ' !

ମିଳା ।। ଏଇଟା ଗୋଟାଏ ନାଁ ? ନାଇଁମ, କହୁନା ନାଁଟା କ'ଣ ?

ବୈକୁଣ୍ଠ ।। (ଈଷତ୍ ଉତ୍ତ୍ୟକ୍ତ ହୋଇ) ଗଜ ଗୋବର୍ଦ୍ଧନ ସିଂ ।

ମିଶ୍ରା ॥ ଗଜ —ତା' ପାଖରେ ପୁଣି ଗୋ—ପୁଣି ବର୍ଦ୍ଧନ→ଫେର ସିଂ । ବାପରେ ବାପ, କି ସାଂଘାତିକ ନାଁରେ ବାବା— ଶୁଣିଲି ମାତ୍ରେ ହିଁ ହସ ଲାଗୁଛି । (ହସି ପକାଇଲି)

ବୈକୁଣ୍ଠ ॥ (କଠୋର ସ୍ୱରରେ) ହସିଲେ ଚଳିବ ନାହିଁ ମିଶ୍ର ! ବହୁତ ବଡ଼ ଜମିଦାର ବଂଶର ନାଁଟା ଏ ।

ଶଙ୍କର ॥ (ନେପଥ୍ୟରୁ) ମଣିଶଙ୍କର ବାବୁ ବୋଲି ଜଣେ କିଏ ଆସିଛନ୍ତି ଆଜ୍ଞା— (ପର ମୁହୂର୍ତ୍ତରେ ପ୍ରବେଶ କଲେ ମଣିଶଙ୍କର ମର୍ଦ୍ଦରାଜ । ଅଦ୍ଭୁତ ତାଙ୍କର ବେଶଭୂଷା । କଳା ରଙ୍ଗର ଢ଼ୋଲା କୋଟ, ପ୍ୟାଣ୍ଟ, ଟାଇଟ୍ ଜାମା, ବେକ ପର୍ଯ୍ୟନ୍ତ ବୋତାମ ଲଗିଛି । ହାତରେ ମସ୍ତବଡ଼ ଗୋଟାଏ ବ୍ୟାଗ । ବୈକୁଣ୍ଠ ଆଗେଇଲେ)

ବୈକୁଣ୍ଠ ॥ ଆସନ୍ତୁ ଆଜ୍ଞା, ବସନ୍ତୁ । ଆପଣ ହିଁ ତେବେ ଓକିଲ ମଣିଶଙ୍କର ମର୍ଦ୍ଦରାଜ ।

ମଣିଶଙ୍କର ॥ (ଉଚ୍ଛ୍ୱସିତ ସ୍ୱରରେ) ଆଜ୍ଞା ହଁ । ଲୁଗାପଟାଗୁଡ଼ାକ ଟିକିଏ ଖରାପ ଦିଶୁଥିବ । କିଛି ଭାବିବେ ନାହିଁ । ଆଜିକାଲିକା ଧୋବାଗୁଡାକଙ୍କ କଥା ତ ଜାଣିଛନ୍ତି । ଠିକ୍ ସମୟରେ ଲୁଗା ଦେବା ଯେମିତି ତାଙ୍କ ଜାତକରେ ନାହିଁ । ତା' ଛଡ଼ା ମୋ ମୋହଣରଟାର ବୃଦ୍ଧିରେ ପଡ଼ି ନଣଟା କାଟି କାଟି ଏକଦମ ଉଡ଼ିଯାଇଛି । ହେଁ ହେଁ, ମାନେ ଆପଣମାନେ କିଛି ଭାବିବେ ନାହିଁ—

ବୈକୁଣ୍ଠ ॥ (ବିଭ୍ରାନ୍ତ ସ୍ୱରରେ) ହଁ ହଁ, ସିଏ କିଛି ନୁହେଁ; କିନ୍ତୁ ଏ କେସ୍‌ରେ ଆପଣ ହିଁ ଫୁଲ୍ ଲିଗାଲ୍ ଅଥରିଟି ତ ?

ମଣିଶଙ୍କର ॥ କଣ କହୁଚନ୍ତି, ଏଥିରେ ପୁଣି ସନ୍ଦେହ କରିବାର କଣ ଅଛି ?

ବୈକୁଣ୍ଠ ॥ (ପରିଚୟ କରାଇ ଦେଲେ) ମୋର ସ୍ତ୍ରୀ, ମୋର ଭଉଣୀ, ଆଉ ସେ ଜୟନ୍ତ ଦାସ—

ମଣିଶଙ୍କର ॥ (ଅତ୍ୟନ୍ତ ଖୁସି ହୋଇ) ଜୟନ୍ତ ଦାସ ! ହ୍ୱାଇଟ୍ ଏ ସିଟ୍ୟୁଏସନ୍— ହ୍ୱାଇଟ୍ ଏ ସିଚୁଏସନ୍ । କିଛି ଭାବିବେ ନାହିଁ ଆଜ୍ଞା, ଏଇ ଟର୍ମଟା ଆମ ପ୍ରଫେସନ୍‌ରେ ବ୍ୟବହାର କରି ଅଭ୍ୟାସ ହୋଇଯାଇଚି—

ମିଶ୍ରା ॥ (ହସି) ଲିଗାଲ ପ୍ରଫେସନ୍‌ରେ ?

ମଣିଶଙ୍କର ॥ ଉହୁଁ, ଥିଏଟ୍ରିକାଲ୍ ପ୍ରଫେସନ୍—ମୁଁ ଆଜ୍ଞା ଜଣେ ନାଟ୍ୟକାର ! ନିୟମିତ ନାଟକ ଲେଖେ । ଏଇ ତ ଗତ ସପ୍ତାହରେ ଗୋଟାଏ ମସ୍ତବଡ଼ ନାଟକ ଶେଷ କରିଦେଇଚି ।

ବୈକୁଣ୍ଠ ॥ (ଗମ୍ଭୀର ସ୍ୱରେ) କିନ୍ତୁ ମଣିଶଙ୍କର ବାବୁ, ମୋର ତ ଧାରଣା ଥିଲା, ଆପଣ ଜଣେ ଓକିଲ ବୋଲି । ଶଶିଶଙ୍କର ବାବୁଙ୍କର ଉକିଲ୍ ସମ୍ପର୍କରେ ନିଷ୍ପତ୍ତି କରିବାକୁ ଆସିଚନ୍ତି ।

ମଣିଶଙ୍କର ॥ ମୋର ବି ତ ସେଇଆ ଧାରଣା, ଆଜ୍ଞା । ଆଉ ତା' ଛଡ଼ା ମୁଁ କଣ ଓକିଲ ପରି ଦିଶୁନାହିଁ ? ମୋ ମୋହରିରଟା ଅଦ୍ଭୁତ ଇନଟେଲିଜେଣ୍ଟ —ଟେ୍ନଟା ସିନା ଫେଲ୍ ହେଲା, ସିଏ ଯଦି ଆସିଥାଆନ୍ତା, ଆପଣଙ୍କୁ ସବୁ ବୁଝେଇ ଦେଇଥାନ୍ତା । ଜାଣନ୍ତି ଆଜ୍ଞା, ବାର୍ ଆସୋସିଏସନ୍‌ର ସଭ୍ୟ ମୁଁ । ଯଦିଓ ଏଇ ନାଟକ ଫାଟକ ଲେଖିବାରେ ତା'ଠୁଁ ଢେର ବେଶି ଇଣ୍ଟରେଷ୍ଟ ମେର ।

ମିଶ୍ରା ॥ (ଜୟନ୍ତକୁ) ଲେଖକଟା ତ ଭାରି ଇଣ୍ଟେରେଷ୍ଟିଙ୍ଗ୍ ।

ବୈକୁଣ୍ଠ ॥ ହଁ, ଦେଖନ୍ତୁ ମଣିଶଙ୍କର ବାବୁ, ମୁଁ ସବୁ ବୁଝିଲି । ଏଟା ଯଦି ନାଟକ ଲେଖିବା କଥା ହୋଇଥାନ୍ତା, ତେବେ ସେ କଥା ଅଲଗା; କିନ୍ତୁ ବର୍ତ୍ତମାନ ପାଇଁ ମୁଁ ଭାବୁଚି ଆମେ ଆମର ଲିଗାଲ୍ ବିଜନେଶ୍ ବିଷୟରେ କଥାବାର୍ତ୍ତା ହବା ।

ମଣିଶଙ୍କର ॥ ଭେରି ଥ୍ ଗ୍ଲେଜର ସାର୍ ! ମୋର କୌଣସି ଆପତ୍ତି ନାହିଁ । ଆପଣଙ୍କର ଯେତେବେଳେ ଯାହାଁ ଇଚ୍ଛା, ମୋତେ ଓକିଲ ବୋଲି ଧରିନିଅନ୍ତୁ । (କିଛିଏ ଅସ୍ୱସ୍ତି ଭୋଗ କରି ବସି) ମେକ୍‌ଅପ୍‌ଟା କିଛିଏ ଖରାପ ହେଲେ ବି ଓକିଲ ଭୂମିକାରେ ମଣିଶଙ୍କର ମର୍ଦ୍ଦରାଜ ମନ୍ଦ ନୁହେଁ ।

ପ୍ରଭା ॥ (ବୈକୁଣ୍ଠଙ୍କୁ) ଆମେ ତେବେ ଭିତରକୁ ଯାଉଚୁ ?

ଜୟନ୍ତ ॥ (ଇଙ୍ଗିତପୂର୍ଣ୍ଣ ସ୍ୱରରେ) ମୁଁ ବି ସେଇଆ ଭାବୁଚି । ଆମେ ଏଠି ରହିଲେ ଅସୁବିଧା ହୋଇପାରେ । (ବିଦାୟ ଉପକ୍ରମ କରି)

ମଣିଶଙ୍କର ॥ (ଜୟନ୍ତର ହାତ ଧରି ପକେଇ) ଗୋଟାଏ ମିନଟ୍ ଜୟନ୍ତବାବୁ, ଆପଣଙ୍କର ଗୋଟାଏ ଚିଠି ଅଛି ।

ଜୟନ୍ତ ॥ (ଆଶ୍ଚର୍ଯ୍ୟ ହୋଇ) ଚିଠି ? ମୋର ?

ମଣିଶଙ୍କର ॥ ହଁ ଆଜ୍ଞା ! ମୋ ମୋହରିରଟା, ଅଦ୍ଭୁତ ଇଣ୍ଟେଲିଜେନସ୍ ଲୋକଟାର, କେଉଁଠି ଚିଠିଟା ରଖି ଦେଇଚି । କିଏ ଜାଣେ ? (ପକେଟ ଅଣ୍ଡାଳି ଚିଠିଟା ବାହାର କଲା) ଆପଣଙ୍କ ଚିଠିଟା ମୁଁ ସାଙ୍ଗରେ ନେଇ ଆସିଥିଲି ଆଜ୍ଞା, ହେଲେ, ଏଠି ଯେ, ବୈକୁଣ୍ଠ ବାବୁଙ୍କ ସାମ୍ନାରେ ଏମିତି ଦେଖା ହୋଇଯିବ—ଯୁଝନ୍ତୁ; ବରଂ ଏକପ୍ରକାର ଭଲ ହେଇଚି । (ଚିଠିଟା ଜୟନ୍ତକୁ ବଢେଇ ଦେଲେ । ଜୟନ୍ତ ନୀରବରେ ଚିଠିଟାକୁ ନେଇ ପକେଟରେ ରଖିଲା)

ମଣିଶଙ୍କର ॥ ଆହାଃ, ପଢ଼ାନ୍ତୁନା, ରଖିଦେଲେ କଣ ? ଟିକିଏ ପାଟିକରି ପଢ଼ନ୍ତୁ ନା ! (ପ୍ରଭାଙ୍କୁ) ଆପଣ କେବେ ଘରୋଇ ଚିଠି ପାଟିକରି ପଢ଼ିବାର ଶୁଣିଛନ୍ତି ? ମୋତେ ଖୁବ ଭଲ ଲାଗେ । ଷ୍ଟେଜ ଉପରେ ଦେଖିଥିବେ, ଯେତେ ଗୋପନୀୟ ଚିଠି ହୋଇଥାଉ ପଛେ—ପଢ଼ାହେଉଥିବ ଏମିତି ଯେ, ସମସ୍ତେ ଶୁଣି ପାରୁଥିବେ—

ଜୟନ୍ତ ॥ (ଗମ୍ଭୀର ସ୍ୱରରେ) ଇସ୍—ଇଏ କ'ଣ ?

ମିନା ॥ କ'ଣ, କ'ଣ ହେଲା ?

ଜୟନ୍ତ ॥ (ଚିଠିଟା ପଢ଼ୁ ପଢ଼ୁ) "ପ୍ରିୟ ମହାଶୟ । ଆପଣ ଶୁଣି ସୁଖି ହେବେ ଯେ ସ୍ୱର୍ଗତ ଶ୍ରୀଯୁକ୍ତ ରବିଶଙ୍କର ମର୍ଦ୍ଦରାଜ ମହାଶୟ ତାଙ୍କର ଉଇଲରେ ଆପଣଙ୍କ ନାମରେ ଦୁଇ ଲକ୍ଷ ଟଙ୍କା ଗଚ୍ଛିତ ରଖିଦେଇ ଯାଇଛନ୍ତି—"

ମିନା ॥ (ପ୍ରଫୁଲ୍ଲିତ ହୋଇ) ଦୁ' ଲକ୍ଷ !

ଜୟନ୍ତ ॥ ଆହୁରି ଅଛି, ଶୁଣ (ପୁଣି ପଢ଼ି) "କିନ୍ତୁ ମହାଶୟ ! ସେଥିପାଇଁ ଏକ ସାମାନ୍ୟ ସର୍ତ୍ତ ଅଛି । ସର୍ତ୍ତଟି ହେଉଛି, ଉଲ୍ଲିଖିତ ଟଙ୍କା ପାଇବାକୁ ହେଲେ, ଆପଣଙ୍କୁ ଆପଣଙ୍କ ନାମ ଶେଷରେ 'ରାଜ ଗୋବର୍ଦ୍ଧନ ସିଂ' ଉପାଧିଟି ଗ୍ରହଣ କରିବାକୁ ପଡ଼ିବ ।"

(ମଣିଶଙ୍କର ହାସ୍ୟମୁଖରେ ଚିଠିଟିର ବକ୍ତବ୍ୟକୁ ସମର୍ଥନ କଲେ)

ବୈକୁଣ୍ଠ ॥ (ବିବ୍ରତ ହୋଇ) ଅସମ୍ଭବ ! ତା କେବେ ହୋଇପାରେନା । ତୁମେ ପୁଣି ସେ ଟଙ୍କାଟା କେମିତି ପାଇବ ?

ମିନା ॥ ଓଃ ! ହାଉ ଥ୍ରିଲିଂ !

ପ୍ରଭା ॥ ଏ ସବୁ କଣ, ମୁଁ ତ କିଛି ବୁଝି ପାରୁନାହିଁ ।

ଜୟନ୍ତ ॥ (ରାଗିଯାଇ) ମୋ ସାଙ୍ଗରେ କ'ଣ ଥଟ୍ଟା କରୁଛନ୍ତି, ମଣିଶଙ୍କର ବାବୁ ?

ମଣିଶଙ୍କର ॥ ଟଙ୍କାଟା କିନ୍ତୁ ଅଛି ଆଜ୍ଞା । ସେ ବିଷୟରେ ନିଶ୍ଚିତ ରହନ୍ତୁ । ମୋ ମୋହରିରଟା ଅଦ୍ଭୁତ ଇନ୍‌ଟେଲିଜେଣ୍ଟ୍; କିନ୍ତୁ ନେକଟା କଣ କରିତ ଜାଣନ୍ତୁ —

ଜୟନ୍ତ ॥ ମୁଁ···ମୁଁ···ରିଫ୍ୟୁଜ୍ କରୁଚି । ଏ ସମ୍ପର୍କରେ କୌଣସି ଆଲୋଚନା ବି ମୁଁ କରିବାକୁ ଚାହେଁନା । (ଚିଠିଟା ଚିର୍ ଚିର୍ କରି ଚିରିପକାଇ) ହୁଁ, ମୋତେ ପୁଣି ଟଙ୍କାର ଲୋଭ ଦେଖାଉଚନ୍ତି ! (ବିବ୍ରତ ସ୍ୱରରେ ଭିତରକୁ ଚାଲିଗଲା)

ମିନା ॥ ଆରେ, ତମେ ଚାଲିଯାଉଛ ଯେ··· (ପ୍ରଭାକୁ) ଦେଖୁଚ ନୂଆବୋଉ, ଏତେଗୁଡ଼ାଏ ଟଙ୍କା···ସିଏ କେମିତି ଚାଲିଯାଉଛନ୍ତି । ଶୁଣ ମ— ଶୁଣ—(କହୁ କହୁ ଜୟନ୍ତ ପଛରେ ଦୌଡ଼ି ଚାଲିଗଲା)

ପ୍ରଭା ॥ ଏସବୁ କ'ଣ, ମୁଁ ତ କିଛି ବୁଝି ପାରୁନାହିଁ । (ମିନା ପଛେ ପଛେ ସେ ବି ଚାଲିଗଲେ ।)

ବୈକୁଣ୍ଠ ॥ ଏ ସବୁର ଅର୍ଥ କଣ ହୋଇପାରେ, ମଣିଶଙ୍କର ବାବୁ ?

ମଣିଶଙ୍କର ॥ ମୁଁ ତ ସେଇକଥା ବୁଝେଇବାକୁ ଆସିଛି, ଆଜ୍ଞା । ଜାଣନ୍ତି, ଏଠିକି ଆସିବା ପାଇଁ ଲୁଗା ପିନ୍ଧିବା ଆଉ ମୁଣ୍ଡ କୁଣ୍ଡେଇବାରେ କେତେ ସମୟ ମୁଁ ଖର୍ଚ୍ଚ କରିଛି ? ଯାକ୍ ଦେଉଛନ୍ତୁ । (ବ୍ୟାଗରୁ କେତେକ କାଗଜପତ୍ର କାଢ଼ି) ତେବେ ଏକ୍‌ଦମ୍ ମୂଳରୁ ଆରମ୍ଭ କରୁଥାଉ, ନା କ'ଣ କହୁଛନ୍ତି ?

ବୈକୁଣ୍ଠ ॥ (ଆଗ୍ରହରେ) ଏଗୁଡ଼ାକ କ'ଣ ଡକୁମେଣ୍ଟ୍ ?

ମଣିଶଙ୍କର ॥ ହଁ, କହିପାରନ୍ତି, ଡକୁମେଣ୍ଟ ଅଥଚ ମ୍ୟାନୁସ୍କ୍ରିପ୍ଟ୍ କହିଲେ ଆହୁରି ଆପ୍ରୋପ୍ରିଏଟ୍ ହେବ । କହୁଥିଲି ପରା, ମୋହରଭଟାର କଥା । ଅଦ୍ଭୁତ ଇଣ୍ଟେରେଷ୍ଟିଙ୍ଗ୍ ! କ'ଣ ହେଇଚି ଜାଣନ୍ତି ? (କାଗଜପତ୍ର ପଢ଼ି) 'ଡିକ୍ଲେର ଯଦି ଚର୍ କମ୍ପାନୀ ଭର୍ସେସ୍ ଜଗନ୍ନାଥ ରାମ୍ ଏଣ୍ଡ କୋଃ ।'

ବୈକୁଣ୍ଠ ॥ (ଦ୍ରୋଣ୍ଡ ସ୍ୱରେ) ଭର୍ସେସ ଜଗନ୍ନାଥ ରାମ ଏଣ୍ଡ କୋଃ ! ଜନ୍ମି ହଁ, ଅଚ୍ଛା; ଦେଖନ୍ତୁ ମଣିଶଙ୍କର ବାବୁ, ଆପଣ ନିଶ୍ଚୟ ଜାଣିଥିବେ, ଦେଶର ଗୁଣଅଡ଼େ ମୋର ପ୍ରତିପତ୍ତି ଅଛି । ପ୍ରାୟ ସମସ୍ତେ ମତେ ଚହ୍ନନ୍ତି, ମୋ ନାଁ ଜାଣନ୍ତି । ଅବଶ୍ୟ ଶ୍ରୀଯୁକ୍ତ ରବଶଙ୍କର ବାବୁଙ୍କ ଟଙ୍କାର ଉତ୍ତରାଧିକାରୀ ହୋଇ ପାରିଥିବାରୁ ମୁଁ ଗର୍ବ ଅନୁଭବ କରୁଚି— (ଖୁବ୍ ବିନମ୍ର ସ୍ୱରେ) ହେଲେ, ଏ ସମୟରେ ଅଫିସିଆଲ୍ ନାଁଟା ଛାଡ଼ି ମୋ ପକ୍ଷରେ 'ରାଜ ଗୋବର୍ଦ୍ଧନ ସିଂ' ହବାଟା—

ମଣିଶଙ୍କର ॥ ଭାରି ଅଡ୍‌ଭ୍ୟାର୍ଡ୍ ହବ, ମୁଁ ବୁଝୁଚି ଅଜ୍ଞା—ମୁଁ ବୁଝୁଚି ।

ବୈକୁଣ୍ଠ ॥ (ହିସାବିଆ ବୋଧକରି) ଆପଙ୍କେ ଏଠିକି ମୋର ଡ଼କାଇବାର ଉଦ୍ଦେଶ୍ୟ ହେଲା, ମୁଁ ଜାଣିବାକୁ ଚାହେଁ ଯେ, ଟଙ୍କାଟା ସାଙ୍ଗରେ ନାଁଟା ନ ନେଲେ କଣ ଚଳିବ ନାହିଁ ?

ମଣିଶଙ୍କର ॥ (ଟିକିଏ ଚମକି) ହଁ,– ଚଳିବ ଅଜ୍ଞା ! ଆପଣ ଯଦି ଚାହାନ୍ତି ଟଙ୍କାଟା, ନ ନେଇ ନାଁଟା ନେଇପାରନ୍ତି ।

ବୈକୁଣ୍ଠ ॥ (ବିରସ ହୋଇ) ଏଁ —(ପୁଣି କଥା ବଦଳାଇ) ଅବଶ୍ୟ ରଞ୍ଜାମର ସେଇ ବଡ଼ଟ ଜମିଦାରି ବଂଶରେ ନାଁଟାକୁ ମୁଁ ଅପସନ୍ଦ କରୁନାହିଁ ।

ମଣିଶଙ୍କର ॥ (ବିସ୍ମୟରେ) ବଡ଼ଟ ଜମିଦାର ବଂଶ ? ଆପଣ ତେବେ ଧରି ନେଉଛନ୍ତି 'ରାଜ ଗୋବର୍ଦ୍ଧନ ସିଂ' ପରି ଗୋଟାଏ ନାଁ ପ୍ରକୃତରେ ଅଛି ଥିଲା ? ନା, ବୈକୁଣ୍ଠ ବାବୁ—ଭୁଲ ଧାରଣା ସେଟା । ପ୍ରଥମଥର ପାଇଁ ଆପଣ

ଆଉ ଜସ୍ୱନ୍ତ ବାବୁ ହିଁ ଏଇ ନାଁଟି ନେବେ । ଆପଣମାନେ ହିଁ ହେବେ 'ରାଜ ଗୋବର୍ଦ୍ଧନ ସିଂ' ନାମର ପ୍ରତିଷ୍ଠାତା ।

ବୈକୁଣ୍ଠ ।। ତେବେ କ'ଣ ଏଟା ସତକୁ ସତ ଗୋଟାଏ ନାଁ ନୁହେଁ ?

ମଣିଶଙ୍କର ।। ନେମ୍ ଇଜ ନେମ୍ ସାର୍ ! ସେଥିରେ ପୁଣି ସତ କଣ ଆଉ ମିଛ କଣ ? ଏ ନାଁଟା ମୋର ମନଗଢ଼ା ।

ବୈକୁଣ୍ଠ ।। (ରାଗିଯାଇ) ମନଗଢ଼ା ! କୋଉ ସାହସରେ ଆପଣ ମତେ ଗୋଟାଏ ମନଗଢ଼ା ନାଁ ନବାକୁ କହୁଚନ୍ତି ?

ମଣିଶଙ୍କର ।। (ବିନୀତ ଭାବରେ) ସବୁ ନାଁ ତ ଆଜ୍ଞା, ମନଗଢ଼ା । ମଣିଷ ଜନ୍ମ ହେବା ଆଗରୁ ତ ଆଉ ନାଁ ନ ଥିଲା, ସେଇ ନିଜେ ସବୁ ଠିକ୍ କରିଛି ।

ବୈକୁଣ୍ଠ ।। ମୁଁ ଆପଣଙ୍କୁ ସତର୍କ କରେଇ ଦଉଚି, ଏତେ ବଡ଼ ସିରିଅସ୍ କଥାବାର୍ତ୍ତା ବେଳେ, ଯଦି ଇମିତି ଇଏ କରନ୍ତି, ତେବେ···

ମଣିଶଙ୍କର ।। (ବୈକୁଣ୍ଠଙ୍କ କଥାରେ କର୍ଣ୍ଣପାତ ନ କରି) ହଁ—କହୁଥିଲି ପରା—ମୋର କକେଇ, କିନ୍ତୁ ଭାରି ମଜାର ଲୋକଥିଲେ ଆଜ୍ଞା । ଭାରି ହ୍ୟୁମରସ୍ । ଆଉ ଆପଣଙ୍କୁ କଣ ଲୁଚେଇବି ଆଜ୍ଞା—? (ବୈକୁଣ୍ଠ ପାଖକୁ ଲାଗିଆସି ଖୁବ୍ ଗୋପନୀୟ ଭାବରେ)—ଏ ଉଇଲ୍‌ଟି କରି-ଦେଇ ଯାଇଚନ୍ତି କେବଳ ହ୍ୟୁମର କ୍ରିଏଟ୍ କରିବା ପାଇଁ ।

ବୈକୁଣ୍ଠ ।। (ଉଚ୍ଚସ୍ୱରରେ) ତେବେ ମୁଁ କହିବାକୁ ବାଧ୍ୟ ହେଉଚି ଯେ, ଆପଣଙ୍କ କକେଇ ମରିଯାଇ ଭଲ ହୋଇଚି, ଖୁବ୍ ଭଲ ହୋଇଚି, ମଣିଶଙ୍କର ବାବୁ । ଆପଣ ନିଜେ ଜଣେ ଓକିଲ୍ କେବେ ନୁହନ୍ତି କିମ୍ବା ଆପଣଙ୍କର କୌଣସି କକେଇ କେବେ ନ ଥିଲେ । ଆପଣ କେବଳ ଗୋଟିଏ ମଜା ଦେଖିବାକୁ ଆସିଚନ୍ତି । ମୋର ଉପରେ ବୋଧହୁଏ ଫାର୍ସ ଲେଖିବାର ମତଲବରେ ଆପଣ ଅଛନ୍ତି । ମୁଁ—ମୁଁ ବାର୍-ଆସୋସିଏସନରେ ଆପଣଙ୍କ ନାଁରେ ରିପୋର୍ଟ କରିବି ।

ମଣିଶଙ୍କର ।। (ଟିକିଏ ଚିନ୍ତା କରି) ତେବେ କ'ଣ ଆଜ୍ଞା, ଆପଣ ଏ ଲିଗାସିରେ ରାଜି ନୁହନ୍ତି ?

ବୈକୁଣ୍ଠ ।। (ବିଭ୍ରାନ୍ତ ବୋଧକରି) କ'ଣ କ'ଣ, କହିଲେ ?

ମଣିଶଙ୍କର ।। ଦି' ଲକ୍ଷ ଟଙ୍କା ନବାକୁ ଆପଣ କ'ଣ ତେବେ ରାଜି ନୁହଁନ୍ତି ?

ବୈକୁଣ୍ଠ ।। (ଆଗ୍ରହରେ) ଟଙ୍କା ? ମାନେ, ଟଙ୍କାଟା ଯଦି ସତକୁ ସତ ଥାଏ—ତେବେ—ମୁଁ ନବାକୁ ରାଜି ଅଛି ।

ମଣିଶଙ୍କର ।। 'ପତକୁ ସତ ଥାଏ' ମାନେ ? ଅଚ୍ଛା ଆଜ୍ଞା ଅଚ୍ଛା । ଆଉ ତା' ସାଙ୍ଗକୁ ନାଁଟା ବି ।

ବୈକୁଣ୍ଠ ।। (ହତଚାପ୍ରାପ୍ତ ବୋଧକଲା) ନାଁଟା ବି ! ଓଃ, (ଚନ୍ଦ୍ରାକର) ଆଚ୍ଛା, ମୁଁ ରାଜି ଅଛି, ମୃତଆତ୍ମା ପ୍ରତି କର୍ତ୍ତବ୍ୟ ଦୃଷ୍ଟିରୁ—ମାନେ, ମୁଁ ଟଙ୍କାଟା ନେଇପାରେ; କିନ୍ତୁ ଦେଖନ୍ତୁ, ଆଜି ମୋର ମୁଣ୍ଡଟା ଠିକ୍ ନାହିଁ, ଆପଣ ବରଂ କାଲି ଆସନ୍ତୁ । ନମସ୍କାର ! (ସ୍ଖଳିତ ପଦକ୍ଷେପରେ ବୈକୁଣ୍ଠ ବାବୁ ଭିତରକୁ ଚାଲିଗଲେ । ସେଇ ସଙ୍ଗେ ସଙ୍ଗେ ମଣିଶଙ୍କର କଲମ ବାହାର କରି କାଗଜ ଉପରେ ଲେଖିଲେ)

ମଣିଶଙ୍କର ।। (ଗିଲାସେ ପାଣି ପିଇଲେ । ବୈକୁଣ୍ଠଙ୍କ ଯିବା ଆଡ଼କୁ ଚାହିଁ) ନମସ୍କାର ଶ୍ରୀ ଗଜ ଗୋବର୍ଦ୍ଧନ ସିଂ, ଆପଣଙ୍କ ନାଁଟାକୁ ଭଗବାନ ଅମର କରି ରଖନ୍ତୁ ! (ମଣିଶଙ୍କର ବାବୁ ଉଠି ଦୁଆର ବାଟେ ଚାଲିଗଲେ; କିନ୍ତୁ ସେ ଆଣିଥିବା କାଗଜଗୁଡ଼ିକ ଛାଡ଼ିଦେଇ ଚାଲିଗଲେ । ମଣିଶଙ୍କର ଚାଲିଯିବାର କେତେକ ମୁହୂର୍ତ୍ତ ପରେ ଅତି ସନ୍ତର୍ପଣରେ ପୁଣି ଭିତରକୁ ପଶିଆସିଲେ ବୈକୁଣ୍ଠ ବାବୁ । ମଣିଶଙ୍କର ଚାଲିଯାଇଥିବାର ଦେଖି ଚିନ୍ତିତ ଭାବରେ କିଛି ସମୟ ପଦଚାରଣା କଲେ, ତାପରେ ମଣିଶଙ୍କର ଛାଡ଼ିଦେଇ ଯାଇଥିବା କାଗଜ ଉପରେ ତାଙ୍କର ନଜର ପଡ଼ିଲା)

ବୈକୁଣ୍ଠ ।। (କାଗଜରେ ଗୋଟିଏ ଅଂଶ ପଢ଼ି, ବିରକ୍ତିରେ) ଉତ୍କଳ ଫର୍ଣ୍ଣିଚରସ୍ କମ୍ପାନୀ ଭର୍ସେସ ଜଗନ୍ନାଥ ରାମ ଏଣ୍ଡ କୋଃ ! ନନ୍‌ସେନ୍‌ସ ! (କାଗଜଟିକୁ ଚିରି ପକାଇଲେ । ଏଇ ସମୟରେ ପ୍ରବେଶ କଲେ ଜୟନ୍ତ ଓ ମିନା)

ମିନା ।। (ଅନୁନୟ କରିବା ଭଙ୍ଗୀରେ) ଭାଇ, ଇଏ କହୁଛନ୍ତି, ଟଙ୍କା ନେବେ ନାହିଁ । ହେଲେ ମୁଁ କହୁଛି, ତାଙ୍କର ନିଶ୍ଚୟ ନେବା ଉଚିତ । ଏତେ-ଗୁଡ଼ାଏ ଟଙ୍କା, ତୁମେ କଣ କହୁଛ ଭାଇ ?

ବୈକୁଣ୍ଠ ।। (ଅର୍ଥପୂର୍ଣ୍ଣ ସ୍ୱରରେ) ହଁ, ଜୟନ୍ତର ଯଦି କୌଣସି ଆପତ୍ତି—ମାନେ—ଅସୁବିଧା ନ ଥାଏ—

ମିନା ।। ତାଙ୍କର ପୁଣି ଅସୁବିଧା କ'ଣ ସ ?

ବୈକୁଣ୍ଠ ।। ନା ନା, ଅସୁବିଧା ସେମିତି ବିଶେଷ କିଛି ନୁହେଁ, ଖାଲି—ମାନେ—'ଗଜ ଗୋବର୍ଦ୍ଧନ ସିଂଟା'—

ମିନା ।। କ'ଣ ହେଇଗଲା ସେଇଥିରୁ, ତମେ ତ ନେବାକୁ ରାଜି ହେଉଛ, ସେ କାହିଁକି ନ ନେବେ ?

ବୈକୁଣ୍ଠ ।। ହ, ତା'ବ ଠିକ୍—ତା'ବ ଠିକ୍—
ଜୟନ୍ତ ।। ଓଃ, ତମକୁ ଆଉ ମୁଁ ପାରବ ନାହିଁ, ଶେଷକୁ ଦେଖୁଚ, ତମ ବୁଦ୍ଧିରେ ପଡ଼ି ମତେ ବାଧ ହୋଇ ଟଙ୍କାଟା ନବାକୁ ପଡ଼ବ ।
ବୈକୁଣ୍ଠ ।। (ଉଠି ଆସି ଜୟନ୍ତର ପିଠି ଆଉଁସେଇ) ମୁଁ ତମକୁ କହୁଥିଲ ନା, ତମେ ପିଲଲୋକ ବୋଲ । ଏଥର ବୁଝିଲ ତ? ସଂସାରରେ ଘର କରିବାକୁ ହେଲେ, ଏସବୁ ପୌରାଣିକ ଆଦର୍ଶ ଫାଦର୍ଶ ଚଳିବ ନାହିଁ । ପ୍ରାକ୍‌ଟିକାଲ୍ ହେବାକୁ ପଡ଼ିବ, ଠିକ୍ ମୋ ପରି । (କଥା ବଦଳେଇ) ବେଶ୍, ତେବେ ବର୍ତ୍ତମାନ ଯାଇ ମଣିଶଙ୍କର ମର୍ଦ୍ଦରାଜ ପାଖକୁ ଏକଥା ଜଣେଇ ଗୋଟାଏ ଟେଲିଗ୍ରାମ କରିଦିଅ । ମୁଁ ପ୍ରଭାକୁ ଶୁଣେଇଦେଇ ଆସେ ଏ ଖବରଟା । (ଭିତରକୁ ଚାଲିଗଲେ)
ଜୟନ୍ତ ।। (ଦୀର୍ଘଶ୍ୱାସ ନେଇ, ମନକୁ ମନ) କ'ଣ ଯେ ମୁଁ କରିବ ! (ପର-ମୁହୂର୍ତ୍ତରେ ପ୍ରବେଶ କଲେ ମଣିଶଙ୍କର, ବଡ଼ ବ୍ୟସ୍ତ ଭାବରେ) ଆରେ, ଆପଣ ପୁଣି ?
ମଣିଶଙ୍କର ।। କୋଉଠି ରଖିଲି କାଗଜଗୁଡ଼ାକ ? କହନ୍ତୁ ନା, କୁଆଡ଼େ ଗଲା କାଗଜଗୁଡ଼ାକ ? ମୁଁ ତ ଏଠି ଗୁଞ୍ଜିଦେଇ ଯାଇଥିଲି ।
ମିତା ।। (ଜୟନ୍ତକୁ) ଏମିତି ଅନେଇ ଠିଆହୋଇ ରହିଲ କ'ଣ ମ ? କହୁନ—କୁହ !
ଜୟନ୍ତ ।। (ଅସ୍ଫୁଟ ସ୍ୱରରେ) କହିବ ?
ମିତା ।। ହଁ ହଁ, କୁହ ?
ଜୟନ୍ତ ।। ତେବେ କହୁଚ ! (ନିଜକୁ ପ୍ରସ୍ତୁତ କରି) ଶୁଣନ୍ତୁ ମଣିଶଙ୍କର ବାବୁ !
ମଣିଶଙ୍କର ।। (ଜୟନ୍ତ କଥାରେ କର୍ଣ୍ଣପାତ ନ କରି) କୁଆଡ଼େ ଗଲା କାଗଜ ଗୁଡ଼ାକ ?
ଜୟନ୍ତ ।। ମୁଁ ରାଜି ଅଛୁ—?
ମଣିଶଙ୍କର ।। (ଅଟକି ଯାଇ ପରମ ବିସ୍ମୟରେ ଜୟନ୍ତ ଆଡ଼କୁ ଚାହିଁ) ତେବେ କ'ଣ ଆପଣ କହୁଛନ୍ତି —
ଜୟନ୍ତ ।। (ଏକ ନିଃଶ୍ୱାସରେ) ହଁ, ଟଙ୍କା ନବାକୁ ରାଜି ଅଛୁ ।
ମଣିଶଙ୍କର ।। ରାଜି ଅଛନ୍ତି ? (ଉଚ୍ଛ୍ୱସିତ ସ୍ୱରରେ ପ୍ରାୟ ଚିତ୍କାର କରି) ହ୍ୱାଇଟ୍ ଏ ସିଚୁଏସନ ! ହ୍ୱାଇଟ୍ ଏ ସିଚୁଏସନ୍ ! (ଉପରକୁ ଅନାଇ) ଶୁଣୁଚ କକେଇ, ଜୟନ୍ତ ଦାସ ବି ରାଜି ଅଛନ୍ତି । (ହଠାତ୍ ଅଟକି) ତେବେ ଆପଣ ଟଙ୍କାଟା ନେବେ ଜୟନ୍ତବାବୁ ?
ଜୟନ୍ତ ।। ହଁ !

ମଣିଶଙ୍କର ॥ ଆଉ ବୈକୁଣ୍ଠ ବାବୁ ?

ଜୟନ୍ତ ॥ ସିଏ ବି ନେବେ ।

ମଣିଶଙ୍କର ॥ ଦୁ'ଜଣଯାକ ନଉଛନ୍ତି ତେବେ ? (କବାଟ ଆଡ଼କୁ ଯାଉଁ ଯାଉଁ) କକେଇ ଜାଣିଥିଲେ, ଭକେଇ ଠିକ୍ ଏଇଆ ହବ ବୋଲି ଜାଣିଥିଲେ ।

[କହୁ କହୁ ବାହାରି ଗଲେ । ବିଭ୍ରାନ୍ତ ଅବସ୍ଥାରେ ଠିଆ ହୋଇ ରହିଲେ ଜୟନ୍ତ ଆଉ ମିତା]



# ଚେଷ୍ଟା

**ନିମାଇଁ ପଟ୍ଟନାୟକ**

॥ ଚରିତ୍ର ॥

ବରଦାପ୍ରସନ୍ନ
ଶାରଦାପ୍ରସନ୍ନ
ବିବେକ
ମାନସ

ଶାନ୍ତିଲତା

[ବରଦାପ୍ରସନ୍ନ ପଟ୍ଟନାୟକଙ୍କ ଘର । ଘରର କାନ୍ଥମାନ କଳା । ଘର ମଝିରେ ଦୁଇଟି ନାଇଲନ୍-ବୁଣା ଷ୍ଟୁଲ୍ ଓ ଗୋଟିଏ ଗ୍ଲେଟ ଟି'ପୟ । ସମୟ—ସନ୍ଧ୍ୟା ।

ପରଦା ଖୋଲିଲା ବେଳକୁ ମଞ୍ଚରେ ଅନ୍ଧକାର । କେବଳ ମେଟ୍ରୋନମ୍‌ର ଟକ୍-ଟକ୍ ଶବ୍ଦ ସେଇ ଅନ୍ଧକାର ମଧ୍ୟରେ ଅଧିକ ଗମ୍ଭୀର—ଯାହାକି ନାଟକର ଗତି ଅନୁସାରେ ଦ୍ରୁତ, ଦ୍ରୁତତର ବା ମନ୍ଥର ହେବ ।

ସେଇ ଅନ୍ଧକାର ଭିତରେ ଶୁଣାଗଲା ପ୍ରସୂତିର ଗର୍ଭ-ବେଦନାଜନିତ ଅସ୍ପଷ୍ଟ ଚିତ୍କାର । କ୍ରମେ ସେ ଚିତ୍କାର ମିଳାଇଗଲା ।

ମଞ୍ଚ ଆଲୋକିତ ହେଲା । ବରଦାପ୍ରସନ୍ନ ଅସ୍ଥିର ମନରେ ପଛ କାନ୍ଥ ପାଖରେ ଠିଆ ହୋଇଥିଲେ । ପ୍ରବେଶ କଲେ ତାଙ୍କ ମାଆ ଶାନ୍ତିଲତା ]

ବରଦା ॥ (ଶାନ୍ତିଲତାଙ୍କୁ ଦେଖି—ଚମକିଲା ପରି) କ'ଣ ହେଲା ?

ଶାନ୍ତି ॥ ନା ।

ବରଦା ।। (ମାଆଙ୍କ ଆଡ଼କୁ ପୁଣି ଚାହିଁଲେ । ନୀରବତା ଲକ୍ଷ୍ୟ କରି ଯାହା କହୁଲେ ନାହିଁ ଓ ଦୃଷ୍ଟି ଫେରାଇ ନେଲେ ।)

ଶାନ୍ତ ।। ବୋହୂ ଶୋଇଯାଇଛି । ନର୍ସ କହୁଥିଲା...

ବରଦା ।। (ଆତଙ୍କିତ ସ୍ୱରରେ) କ'ଣ ?

ଶାନ୍ତ ।। ଭୟର କାରଣ ନାହିଁ ।

ବରଦା ।। ଓଃ !

ଶାନ୍ତ ।। ନର୍ସ କହୁଥିଲା,—ହୁଏତ ଆଜି ହୋଇ ନ ପାରେ । କାଲିକି ଗଡ଼ି ଯାଇପାରେ । ତେବେ ସେ ବୋହୂ ପାଖରେ ଅଛି । ଧାଈ ବି ।

ବରଦା ।। ଡାକ୍ତର...?

ଶାନ୍ତ ।। ଖବର ଦେଲା ମାତ୍ରେ ଆସିବେ ।

ବରଦା ।। ଡାକ୍ତରଖାନାକୁ—

ଶାନ୍ତ ।। କ'ଣ ଦରକାର ? ତମେ ତ ସବୁ ସେ'ଥରେ ଏଇ ଘରେ ହୋଇଥିଲ ।

ବରଦା ।। ହଉ । (ପାଖ ଷ୍ଟୁଲ୍‌ରେ ବସି ପଡ଼ିଲେ)
(ସାମାନ୍ୟ ନୀରବତା ପରେ) ବାପା...?

ଶାନ୍ତ ।। ସେମିତି ଅଛନ୍ତି ।

ବରଦା ।। କ'ଣ କରୁଛନ୍ତି ?

ଶାନ୍ତ ।। କ'ଣ ଆଉ କରିବେ ? (ସାମାନ୍ୟ ନୀରବତା ପରେ—ନମ୍ର ସ୍ୱରରେ) ଆଜି ଖାଲି ଏପାଖ ସେପାଖ ହେଉଛନ୍ତି—ଦୁଃଖରେ···

ବରଦା ।। ଆଜି...ଏପାଖ ସେପାଖ ..?

ଶାନ୍ତ ।। (ଦୁଃଖ ବଜଡ଼ିତ କଣ୍ଠରେ) ହଁ !
(କହୁ କହୁ ବାମପାଖକୁ ଅଗେଇ—) ଏ କୋଣରୁ ସେ କୋଣ···

ବରଦା ।। (ଷ୍ଟୁଲ୍ ଛାଡ଼ି ଠିଆହେଲେ । ଆଶ୍ଚର୍ଯ୍ୟ ସହକାରେ—) ବୋଉ !

ଶାନ୍ତ ।। (ପୁଣି ପାଦେ ଆଗେଇଲେ । ସମବେଦନା ସହକାରେ—) ସେ କୋଣରୁ ଏ କୋଣ ।

ବରଦା ।। (ମଞ୍ଚର ଡାହାଣ ପାଖକୁ ଯାଉ ଯାଉ) ବୋଉ !

ଶାନ୍ତ ।। ଫେର୍ ଏ କୋଣରୁ ଆର କୋଣ । ଘରଟା ସାରା ।

ବରଦା ।। ଏମିତି··· !!

ଶାନ୍ତ ।। (ସତେ ଯେପରି ସ୍ୱାମୀଙ୍କ ଅବସ୍ଥା ଓ କଷ୍ଟ ବୁଝି ପାରିଛନ୍ତି, ମାତ୍ର କଥାରେ ଠିକ୍ ପ୍ରକାଶ କରି ପାରୁ ନାହାଁନ୍ତି—)
ଯେମିତି ଘୂରୁଛନ୍ତି···ନା—ଯେମିତି···ଯେମିତି

ବରଦା ।। ପିଲାଙ୍କ ପରି ?

ଶାନ୍ତ ॥ ନା ।
ବରଦା ॥ ଆଉ ?
ଶାନ୍ତ ॥ କେମିତି ଘୂଷୁରି ଘୂଷୁରି···ନା, ଯେମିତି···
ବରଦା ॥ ଯେମିତି ଅସୁରପା ବେଳେବେଳେ ତଳେ ଓଲଟି ପଡ଼ି ଘୂଷୁରୁଥାଏ ? ଗୋଡ ଛଟ୍ ଛଟ୍ କରୁଥାଏ······
ଶାନ୍ତ ॥ ବରଦା !
ବରଦା ॥ (ମାଆ ଶାନ୍ତଲତା ଯାହା କହିବାକୁ ଚାହୁଁଛନ୍ତି, ଅଥଚ କହିପାରୁ ନାହାନ୍ତି, ତାହା ନିଜେ ବୁଝିପାରିଥିଲା ଭଳି—) ଯେମିତି ମରୁରେ ମାଛ ପଡ଼ିଯାଇଥାଏ···?
ଶାନ୍ତ ॥ (ସ୍ୱାମୀଙ୍କ ଅବସ୍ଥା ଓ ମରୁରେ ମାଛର ଅବସ୍ଥାର ତୁଳନା କରିବାକୁ ଚେଷ୍ଟା କରି) ବରଦା !
ବରଦା ॥ ବାହାରିବାକୁ ଚେଷ୍ଟା କରୁଥାଏ···ଅଥଚ···
ଶାନ୍ତ ॥ (ଯେମିତି ଠିକ୍ ଅନୁଭବ କରି ପାରୁଛନ୍ତି) ଅଥଚ ବାହାରି ପାରୁ ନ ଥାଏ—
ବରଦା ॥ ବୋଉ !
ଶାନ୍ତ ॥ ଯେତେ ଯାହା ହେଲେ ବି ସେ ତୋର ବାପା ।
(ବରଦା ନୀରବରେ ଘର ମଝିରେ ଥିବା ଟୁଲ୍ ପାଖକୁ ଫେରିଗଲେ)
ଶାନ୍ତ ॥ (ଟୁଲ୍ ଆଡ଼କୁ ଯାଉ ଯାଉ) ତୁ ତାଙ୍କୁ ସେଦିନ ଏମିତି ଅପମାନିତ କରି···
ବରଦା ॥ (ବିମିତ ସ୍ୱରରେ) ତା' ବ୍ୟତୀତ ଆଉ କ'ଣ ଉପାୟ ଥିଲା ? (ଟୁଲ୍‌ରେ ବସି ପଡ଼ିଲେ)
ଶାନ୍ତ ॥ (କହୁ କହୁ ଟୁଲ୍ ପଛକୁ ଯାଇ) ସେଇଦିନଠୁଁ ସେଇ କେମିତି ଭାଙ୍ଗି ପଡ଼ିଛନ୍ତି । ଦୁଃଖରେ—ଅଭିମାନରେ—ଯେମିତି ଜଳପୋଡ଼ି ହେଉଛି······
ବରଦା ॥ ବୋଉ···!
ଶାନ୍ତ ॥ ଗଲୁ ଦେଖିବୁ । କାଲିଠାରୁ କେମିତି···
ତୋର ଅନ୍ତତଃ ଏ ସମୟରେ···ଏମିତି କହିବା···(କହୁ କହୁ ତାହାଣ ପାଖକୁ ଆଗେଇ ଗଲେ)
ବରଦା ॥ ଏ ସମୟରେ ?
ଶାନ୍ତ ॥ ବୋହୂର···(ପ୍ରସବ ବେଦନାଜନିତ ସେଇ ଚତ୍କାର ଅସ୍ପଷ୍ଟଭାବେ ଶୁଣାଯାଉଥାଏ )

•

ବରଦା ।। ଓଃ ! (କ୍ରମେ ଚମତ୍କୃତ ଜଣାଗଲେ)

ଶାନ୍ତ ।। (ବରଦାଙ୍କର ନିକଟତର ହୋଇ) ବରଦା !

ବରଦା ।। ସହିବାର ତ ଗୋଟାଏ ସୀମା ଅଛି ବୋଉ !

ଶାନ୍ତ ।। ହଉ, ଯାହା ସୁନ୍ଦର ଦିଶୁଛି···

(ଶାନ୍ତିଲତା ଧୀର ପଦରେ ଭିତରକୁ ଚାଲିଗଲେ)

(ବରଦାପ୍ରସନ୍ନ ଚମତ୍କୃତ ଜଣାଗଲେ । ବାହାରୁ କିଏ ଆସୁଥିବାର ଅନୁମାନ କରି କହିଲେ—"କିଏ ?" ଏବଂ କେହି ନ ଆସୁଥିବାର ଜାଣିଲେ । କ୍ରମେ ଚିନ୍ତାର ରେଖା କପାଳରେ ଫୁଟି ଉଠିଲା । ଚାହାଁଣୀରେ ବି ସେଇ ଭାବ । ମଞ୍ଚର ଆଲୋକ ମ୍ଳାନ ହେଲା । ପ୍ରବେଶ କଲେ ଶାରଦାପ୍ରସନ୍ନ ପଟ୍ଟନାୟକ, ବରଦାପ୍ରସନ୍ନଙ୍କ ବାପା)

ଶାରଦା ।। (ମଞ୍ଚର ଡାହାଣ ଦିଗରୁ ପ୍ରବେଶ କରି ପାଦପ୍ରଦୀପ ଅଭିମୁଖରେ ସାମାନ୍ୟ ଆଗେଇ—)

ଶାରଦାପ୍ରସନ୍ନ ପଟ୍ଟନାୟକ ବି କାହା କଥା ସହ୍ୟ କରେନା ।

ବରଦା ।। (ଉଠି ଠିଆ ହୋଇ—) ବାପା ! !

ଶାରଦା ।। ବାପା ନ କହିଲେ ଭଲ ହୁଅନ୍ତା ।

ବରଦା ।। ଆପଣ···ଏଠି··· ?

ଶାରଦା ।। ସବୁ ଶୁଣୁଛି । ସବୁ ଜାଣୁଛି ।

ଜାଣୁଛି ତୋ ମନର ପ୍ରତିକ୍ରିୟା ।

(ବରଦାଙ୍କ ନିକଟକୁ ଆସି—) ମୁଁ ଯାହା କଲେ, ନ କଲେ, ତୋ'ର କହିବାର କ'ଣ ଅଛି ?

ସମ୍ପତ୍ତି ସବୁ ମୋର । ମୋ ଇଚ୍ଛା ।

ବରଦା ।। (ବିସ୍ମିତ ହୋଇ—) କିନ୍ତୁ—ମୁଁ ତ କହୁଛି—ଆପଣଙ୍କୁ...

ଶାରଦା ।। ମୁହଁ ଖୋଲି କହିନାହୁଁ ।

ବରଦା ।। ନା ।

ଶାରଦା ।। ନ କହିଲେ କଣ ହେଲା ? ସବୁ କଥା କଣ ସବୁବେଳେ ମୁହଁ ଖୋଲି କୁହାଯାଏ ? (ବାମ ପାଖକୁ ଚାଲି ଆସିଲେ)

ବରଦା ।। (କିଛି ବୁଝି ନ ପାରି) ନା ।

ଶାରଦା ।। ନା ମାନେ ? କୁହାଯାଏ ନା ବୋଲି କ'ଣ ବୁଝି ହୁଏ ନା ? ଜାଣି ହୁଏ ନା ? ବମ୍ବେ, ଦିଲ୍ଲୀ, କଲିକତା ବେତାର କେନ୍ଦ୍ରର ଗୀତ କ'ଣ ଏ ଘର ରେଡ଼ିଓରୁ ଶୁଣାଯାଇ ପାରେ ନା ? (କହୁ କହୁ ବାମପାଖେ ଆଗକୁ ଆଗେଇ ଗଲେ)

ବରଦା ॥ ହଁ…
ଶାରଦା ॥ ତା'ହେଲେ ?
ବରଦା ॥ କହ, କ'ଣ ଆପଣ…?
ଶାରଦା ॥ କ'ଣ କହିବାକୁ ଚାହେଁ ?
ବରଦା ॥ କ'ଣ ?
ଶାରଦା ॥ ଯାହା ଭାବୁଚ ।
ବରଦା ॥ ଭାବୁଚ…!!
ଶାରଦା ॥ ଅଥଚ କହିପାରୁ ନାହଁ ।
ବରଦା ॥ କ'ଣ ?
ଶାରଦା ॥ ତୋ ମନରେ ଝଡ଼ ଉଠିଚ ।
ବରଦା ॥ ଝଡ଼ ?
ଶାରଦା ॥ ମୋ ଭରୁଙ୍କରେ…
ବରଦା ॥ (ଚନ୍ଦ୍ରା କଲଭଲ ଜଣାଗଲେ)
ଶାରଦା ॥ ପୁଞ୍ଜୀଭୂତ ହେଉଚ ।
ବରଦା ॥ (ତାଙ୍କ ପାଟିରୁ ବାହାରଗଲା, 'ହ୍ ' ଏବଂ ସେ କହିଦେଇ ବିସ୍ମିତ ହେଲେ)—ହ !
ଶାରଦା ॥ ଆଶଙ୍କା ହେଉଚ…
ବରଦା ॥ (ପୂର୍ବପରି) —ହଁ !
ଶାରଦା ॥ ଅଶଙ୍କା ?
ବରଦା ॥ କ'ଣ ? (ମୁହଁରେ ରହସ୍ୟ ଭାବ)
ଶାରଦା ॥ ଆଶଙ୍କା —ମୁଁ ସବୁ ଉଡ଼େଇ ଦେବ । କଛୁ ରଖିବ ନାହିଁ ।
ବରଦା ॥ କ'ଣ ?
ଶାରଦା ॥ ସମ୍ପତ୍ତି । (ପାଖ ଷ୍ଟୁଲ୍‌ରେ ବସିଲେ)
ବରଦା ॥ ହଁ ତ । ସବୁ ସମ୍ପତ୍ତି । ଅଯଥାରେ…
ଶାରଦା ॥ ଅଯଥାରେ ?
ବରଦା ॥ (ଯେପରି ଟେପ୍ ରେକର୍ଡର୍ ସାହାଯ୍ୟରେ ସଂଗୃହୀତ ହୋଇଥିଲା ସତେ କ ତାଙ୍କ ଭିତରେ ସଂଗୃହୀତ ହୋଇ ରହିଛି ଏବଂ କଏ ଯେପରି ସେଇ ରେକର୍ଡ୍‌ଟି ବଜାଇ ଦେଉଛି—)
ଅଯଥାରେ ନୁହେଁ ଆଉ କ'ଣ ?
ଗୁପ ଦଳ ପିଲା ? ସେମାନଙ୍କ ପିଲା ଦୈନକ କେତେ ଖର୍ଚ୍ଚ ? ଠାକୁର ବେଢ଼ା ଭିତରେ ଦଳେ ପୁଅ ଝିଅଙ୍କୁ ରଖି ସେ ଲୀଳା ଚାଲିଚ ?—

ଗ୍ରସଜ୍ଜାଳା । ଗ୍ରସଜ୍ଜାଳା ନା ଆଉ କ'ଣ ? (ଗୋଟିଏ ସ୍ଥାନରେ ଠିଆ-ହୋଇ ନିର୍ଲିପ୍ତ ଭାବରେ କହିଗଲେ)

ଶାରଦା ॥ (ଟୁଲ୍ ଛାଡ଼ି ଠିଆହେଲେ—ସାମାନ୍ୟ ଉତ୍ତେଜିତ ସ୍ୱରରେ) କ'ଣ ହେଲା ସେଠି ?

ବରଦା ॥ (ପୂର୍ବପରି ଠିଆ ହୋଇଥାନ୍ତି—ସେହିପରି କହିଗଲେ) କ'ଣ ଆଉ ହୁଅନ୍ତା ? ଜମି ବିକ୍ରୀ ହୋଇ ଚାଲିଛି ଗ୍ରାମରେ । ମନ୍ଦିର ଭୋଗ ବନ୍ଦ ହେଲା—ଜମି ବିକ୍ରୀ । ଅନ୍ୟ ଗାଁରେ କୂଅ ଖୋଳା ହେଲା—ଜମି ବିକ୍ରୀ । ଗ୍ରାମ ଦଳ ପୋଷା ହେଉଛନ୍ତି—ଜମି ବିକ୍ରୀ । ଆଉ କେତେ ଏକର ରହିଲା ? ପୁଣି ଭୂଗର୍ଭଶୀ ଆଇନ୍ ଯାହା ହେଲାଣି, ସେମାନେ ହୁଏତ ··

ଶାରଦା ॥ ମୋ ସମ୍ପତ୍ତି ବିଷୟରେ କାହାର କିଛି କହିବାର ଅଧିକାର ନାହିଁ ।

ବରଦା ॥ (ସ୍ୱାଭାବିକ ଭାବରେ) କୋଉଠି କହୁଛନ୍ତି ? ଉତ୍ତରକୁ ପସ୍ତରନ୍ତୁ ।

ଶାରଦା ॥ କ'ଣ ପସ୍ତରିବ ?

(ବରଦା ପୁଣି ସ୍ୱାଭାବିକ ଅବସ୍ଥାକୁ ଫେରି ବାମପାଖେ ମଞ୍ଚ ଅଗକୁ ଆଗେଇ ଯାଉ ଯାଉ—)

ବରଦା ॥ ଆମେ ବଞ୍ଚିବୁ କେମିତି ? ବଜାର ଦର କ'ଣ ହେଲାଣି ? ଟଙ୍କାଟାର ମୂଲ୍ୟ ଆସି ଅଣଚାରଣ ପଇସା ହେଲାଣି । କହନ୍ତୁ, ଆମେ ବଞ୍ଚିବୁ କେମିତି ? ସେମାନେ ବଞ୍ଚିବେ କେମିତି ?

ଶାରଦା ॥ ସେମାନେ ? (ବରଦାଙ୍କୁ ହଠାତ୍ ନୀରବ ଦେଖି) କୋଉମାନେ ?

ବରଦା ॥ ଭାବି ଯେଉଁମାନେ ଏ ସଂସାରକୁ ଆସିବେ—?

ଶାରଦା ॥ (ରୁଦ୍ଧପ୍ରାଣ) —ଓଃ !

ବରଦା ॥ ସେମାନଙ୍କ ଭବିଷ୍ୟତ ?

ଆମର ବର୍ତ୍ତମାନ ପ୍ରଶ୍ନମସ୍ତ ; ଭବିଷ୍ୟତ ସ୍ଥିତିହୀନ । କ'ଣ କରିବୁ ? (ବରଦା ଟୁଲ୍ ଆଡକୁ ଫେରିଆସିଲେ । ଶାରଦା ମଧ୍ୟ)

ଶାରଦା ॥ ଏ ପ୍ରଶ୍ନ ହଠାତ୍ ମନେ କାହିଁକି ? ମୁଁ କ'ଣ ବଜାରରେ ଜିନିଷପତ୍ରର ଦରଦାମ ବଢ଼େଇ ଦେଇଛି ? ସୁନାଦର ଚଢ଼ା କରିଦେଇଛି ? ଟଙ୍କାର ମୂଲ୍ୟ କମେଇ ଦେଇଛି । ମୁଁ ତ କିଛି ମଦ, ଗଞ୍ଜେଇ ଖାଇ-ଦେଇ ନାହିଁ । ମଦନମୋହନ ଇଷ୍ଟଦେବତା—କୁଳଦେବତା । ଯାହା କରିଛି, ସବୁ ତାଙ୍କର ପ୍ରୀତି ପାଇଁ, ବଂଶର ମଙ୍ଗଳ ପାଇଁ ।

(ଶାରଦା କହୁ କହୁ କ୍ରମେ ବାମ୍‌ଆଡକୁ ଅଗେଇ ଗଲେ)

ବରଦା ॥ ମଦନମୋହନଙ୍କ ନାଁରେ ଭଲ ପ୍ରହସନ ଚାଲିଛି । ଈଶ୍ୱରଙ୍କ ନାଁରେ ସବୁଠି ଏକା ପ୍ରହସନ, ଏକା ଭଣ୍ଡାମି ।

ଶାରଦା ॥ ବରଦା !

ବରଦା ॥ ସେଇ ପ୍ରତାରଣା, ସେଇ ହଟପୋକାସି— ନିଜ ପାଖରେ, ଅନ୍ୟ ପାଖରେ, କେତେଦିନ ଏମିତି—

ଶାରଦା ॥ ଏଇମିତି ପଞ୍ଚାଶ ବାହାଶତ—ଏଇଆ କହୁଚ ।

ବରଦା ॥ ଈଶ୍ୱର ଆଉ ନାହାନ୍ତି । ମରିଗଲେଣି । କେବେଠୁଁ ମରିଯାଇଲେଣି ।

ଶାରଦା ॥ ବରଦା ! ଏମିତି ଈଶ୍ୱର-ବିଦ୍ରୋହୀ ହେଲେ…

ବରଦା ॥ ସେଇ ପୁରୁଣା କଥା । ସେଇ ପୁରୁଣା ଭୟ । ପିଲାଦିନୁ ଆଜିଯାଏ ।

ଶାରଦା ॥ କୋଉ କଥା ? କୋଉ ଭୟ ?

ବରଦା ॥ ଈଶ୍ୱର ଭୟ । ମିଛ ଭୟ । ଏଇ ମିଛ ଭୟ ମଣିଷର ମନକୁ ଦୁର୍ବଳ କରିଦେଇଛି । ପଙ୍ଗୁ କରି ରଖିଚି । (କମେ ତାହାଣ ପାଟେଞ୍ଚ ସାମାନ୍ୟ ଆଗେଇ—) ସେଇଥିପାଇଁ ମଣିଷ ପରି ବଞ୍ଚି ପାରୁନାହିଁ । ଇଆ ବଦଳରେ—

ଶାରଦା ॥ ବହୁ ସଂଗ୍ରାମ ହେଇଚି, ଅତୀତରେ । ଫଳ କିଛି ହେଇନି । ବିଶ୍ୱାସ ବଡ଼ କଥା । ଯେ ଯେମିତି ବିଶ୍ୱାସ ରଖିଚି…

ବରଦା ॥ ସେଇ ମିଛ ବିଶ୍ୱାସ ପଛରେ ଧାଇଁଥାନ୍ତୁ । ଧାଇଁ ଧାଇଁ ତ ସବୁ ସମ୍ପତ୍ତି ସାରିଲେଣି । (ଶାରଦାଙ୍କ ସାମାନ୍ୟ ନିକଟକୁ ଯାଇ) ଆମେ ଚଳିବୁ କେମିତି ? ଆମେ ବଞ୍ଚିବୁ କେମିତି ? ସେମାନଙ୍କୁ ବଞ୍ଚାଇବୁ କେମିତି ?

ଶାରଦା ॥ କେମିତି କେମିତି ବୋଲି କେବଳ ଚିତ୍କାର କଲେ…

ବରଦା ॥ (ଶାରଦାଙ୍କ କଥାପ୍ରତି ଧ୍ୟାନ ନଦେଇ—) ଏବେ ଦେଶରେ ସତାଅଣି ଲକ୍ଷ ବେକାର । ସେମାନଙ୍କ ବେଲକୁ କ'ଣ ଥିବ ?—ନା ଥିବ ବ୍ରିକିଶି, ନା ଆପଣ ରଖିଥିବେ ଜମିବାଡ଼ି । କ'ଣ ସେମାନେ କରିବେ ? (ଘର ମଝିରେ ଥିବା ଟୁଲ୍ ଆଡ଼କୁ ଆଖି ଅପି—) ଷ୍ଟ୍ରେଶ କରିବେ, ଡକାଯିତି କରିବେ, ସୁବିଧାରେ କାହାକୁ ହତ୍ୟା କରିବେ, ଗାଡ଼ି ଭିତରେ ଛୁରି ଦେଖାଇ ଟଙ୍କା ସୁନା ନେଇଯିବେ, କେଉଁଠୁ ଖାଦ୍ୟଦ୍ରବ୍ୟ ଲୁଟି କରିବେ । ସେମାନଙ୍କ କଥା ଛାଡ଼ନ୍ତୁ । ଆମକୁ ବି ସେଇଆ କରିବାକୁ ପଡ଼ିପାରେ । ଅଉ ଉପାୟ କ'ଣ ଅଛି ?

ଶାରଦା ॥ କିଏ ଏ ସବୁ ପାଇଁ ଦାୟୀ ? କିଏ ? ମୁଁ ନା ଅଉ କିଏ ?

ବରଦା ॥ ଆଗେ ନିଜ କଥା ଭାବନ୍ତୁ—ଆପଣ ବୁଝନ୍ତୁ ?

ଶାରଦା ॥ ମାନେ…

ବରଦା ॥ ଏଇ ମୋ କଥା ଦେଖନ୍ତୁ —ମୋର ବୟସ କେତେ ହେଲା ? ଜମିବାଡ଼ି ଘରଦ୍ୱାର ବୁଝିବାର ବୟସ ମୋର କ'ଣ ହୋଇନ ? (ଘର ମଝିରେ ଥିବା ଟୁଲ୍ ଆଡ଼କୁ ଆସିଲେ)

ଶାରଦା ॥ ବୟସ ହେଲେ କ'ଣ ହେଲା ? 'କହିଦେବା ସହଜ । କାମ ବେଳକୁ— ଅଭିଜ୍ଞତା ? ସେ କାହିଁ ?

ବରଦା ॥ ବୁଢ଼ାମାନେ ସବୁଠି ଗାଦି ମାଡ଼ି ବସିଛନ୍ତି । ଛାଡ଼ି ଦିବାକୁ ନାରାଜ । ପଞ୍ଚାବନରୁ ଅଠାବନ । ତା'ପରେ ଅଭିଜ୍ଞତା । ଅଭିଜ୍ଞତା ନାଁରେ... ଅଠାବନରୁ ଅଣଷଠି—ଷାଠିଏ—ଏକଷଠି—ବା' ଷଠ । ତାପରେ ବୟସ ମର୍ଯ୍ୟାଦା—ଏଠି ସଭାପତି, ସେଠି ଚେୟାର୍‌ମ୍ୟାନ୍, କୋଉଠି ଉପଦେଷ୍ଟା...ସବୁ ଗାଦି...ସେଇଥିପାଇଁ ସବୁଠି ଅସନ୍ତୋଷ, ସବୁଠି ବିଭ୍ରାଟ, ସବୁଠି ଗଣ୍ଡଗୋଳ ।

ଶାରଦା ॥ ଓଃ, ତୁ ତା'ହେଲେ ରଜା ହେବାକୁ ଚାହୁଁ ?

ବରଦା ॥ ରଜା ?

ଶାରଦା ॥ ରଜା ନୁହେଁ ଆଉ କ'ଣ ? ଗାଦି ଅଧିକାର କରିବୁ—ଔରଙ୍ଗଜେବ୍ ପରି ମତେ ବନ୍ଦୀ କରିନେ । ତା'ପରେ ସବୁ ଦଖଲ କରିବୁ ।

ବରଦା ॥ ଅସମ୍ଭବ କ'ଣ ?

ଶାରଦା ॥ ଅସମ୍ଭବ ନୁହେଁ —ଦୁର୍ଗାପ୍ରସନ୍ନ ବି ତତେ ସେଇଆ କରିବ ।

ବରଦା ॥ ଦୁର୍ଗାପ୍ରସନ୍ନ ?

ଶାରଦା ॥ ଓଃ !

ବରଦା ॥ ସେ କିଏ ?

ଶାରଦା ॥ ଯାହା ପାଇଁ ଏତେ ଚିନ୍ତା, ଏତେ ଅଭିଯୋଗ ।

(ଶାନ୍ତିଲତା ଅନ୍ତରାଳରୁ ଡ଼ାକଲେ—ବରଦା ! ବରଦା ! ଶାରଦା-ପ୍ରସନ୍ନ ବରଦାଙ୍କୁ ଚାହିଁଲେ ଓ ଆସିଥିବା ବାଟରେ ଚାଲିଗଲେ । ବରଦା ସେତେବେଳକୁ ଟୁଲ୍ ପାଖରେ ଥିଲେ । କ୍ଳାନ୍ତ ହେଲାପରି ବସିପଡ଼ିଲେ—ଶାରଦାପ୍ରସନ୍ନଙ୍କ ପ୍ରବେଶ ପୂର୍ବରୁ ଯେପରି ଚିନ୍ତାବିଷ୍ଟ ହୋଇ ବସିଥିଲେ, ସେଇଭଳି ।

ମଞ୍ଚର ନୀଳ ଆଲୋକ ଉଜ୍ଜ୍ୱଳ ହେଲା । ପ୍ରବେଶ କଲେ ଶାନ୍ତିଲତା ।)

ଶାନ୍ତି ॥ ବରଦା ! ବରଦା !

ବରଦା ॥ (ସ୍ୱପ୍ନୋତ୍ଥିତ ପରି) ଏଁ !

ଶାନ୍ତି ॥ କ'ଣ ହେଲା ?

ବରଦା ॥ ନା ।

ଶାନ୍ତ ॥ ମୁଣ୍ଡରେ ଏମିତି ହାତଦେଇ···

ବରଦା ॥ ବାପାଙ୍କ କଥା ।

(ଝୁଲ୍ ଗୁଡ଼ ଠିଆହେଲେ)

ଶାନ୍ତ ॥ ସବୁବାର କ'ଣ ଅଛି ? ବାରମ୍ବାର କହିଲି—ତାଙ୍କ ସଙ୍ଗେ ଝଗଡ଼ା କରନା । ଯାହା କରୁଛନ୍ତି କରନ୍ତୁ—ଉଡ଼ାନ୍ତୁ, ବୁଡ଼ାନ୍ତୁ । ତେଣିକି ତମ ଭାଗ୍ୟରେ ଯାହାଥିବ । କିନ୍ତୁ···

ବରଦା ॥ ତାଙ୍କ ଅସନ୍ତୋଷରେ ଆମେ ପାପ ଭୋଗ ନ କରୁ—ନା ?

ଶାନ୍ତ ॥ କହିଲେ ତ ବିଶ୍ୱାସ କରୁନ୍ । (ସାମାନ୍ୟ ନୀରବତା ପରେ—) ଆଉ ସେଥିରୁ କ'ଣ ମିଳିବ ? ଜମିବାଡ଼ି ତ ନିଜ ଆୟତ୍ତକୁ ଆଣିଲୁ । ତାଙ୍କ ସମ୍ପଦକ ଭାଙ୍ଗି ଦେଲୁ । ନ କହିବା କଥା ତ କହିଲୁ···

ବରଦା ॥ ତା' ବ୍ୟତୀତ ଆଉ କ'ଣ ଉପାୟ ଥିଲା ? ମିଛ ଆଦର୍ଶ ପଛରେ ତ ବହୁତ ଧାଇଁଲ । କ'ଣ ଫଳ ହେଲା ? ଆଜିକାଲିର ପରିସ୍ଥିତି ଯାହା ହେଲାଣି, ମଣିଷ ପରି ଆମେ ବଞ୍ଚିବା କଷ୍ଟ । ଏ ଘରକୁ କାଲି ଯେ ଆସିବ···?

ଶାନ୍ତ ॥ କିଏ ? (ପରେ ବୁଝିପାରି—) ଓଃ ! ଦୁର୍ଗାପ୍ରସନ୍ନ ।

ବରଦା ॥ ଦୁର୍ଗାପ୍ରସନ୍ନ ?

ଶାନ୍ତ ॥ ହଇ । ଏ ଘରକୁ ଯେ ଆସିବାକୁ ଅପେକ୍ଷା କରି ବସିଛି । ସମସ୍ତ ଗଣୁଚି । ଆସିଯିବ—ହୁଏତ ଆଜି ବା କାଲି···

ବରଦା ॥ କିନ୍ତୁ ଦୁର୍ଗାପ୍ରସନ୍ନ—?

ଶାନ୍ତ ॥ ତାରି ନାଁ । ତୋ ବାପା କହୁଥିଲେ···

ବରଦା ॥ କଣ ହଉଚି ଆଗ ଦେଖ, ତମେ ଯାହା ଆଶା କରୁଚ···ଯଦି ହୁଏ— ତେବେ...

ଶାନ୍ତ ॥ ତେବେ ?

ବରଦା ॥ ସେ ପୁରୁଣା ପୂଜାର ଖିଅ ପୁଣି କାହିଁକି···?

ଶାନ୍ତ ॥ (ବୁଝି ନ ପାରି) ପୁରୁଣା ପୂଜା ?

ବରଦା ॥ ସେଇ କ୍ଷୀରୋଦପ୍ରସନ୍ନ, ବିରଜାପ୍ରସନ୍ନ, ଶାରଦାପ୍ରସନ୍ନ, ବରଦାପ୍ରସନ୍ନ— ତା' ପରେ ପୁଣି ଦୁର୍ଗାପ୍ରସନ୍ନ ? ନା, ଦୁର୍ଗାପ୍ରସନ୍ନ କି ହରପ୍ରସନ୍ନ ଆଉ ନୁହେଁ । ବରଂ···ବରଂ···। ସେ ପରମ୍ପରାର ପୁନରାବୃତ୍ତି ଆଉ ନ ହେଉ । ମୁଁ ଭାଙ୍ଗି ଦେବାକୁ ଚାହେଁ, ସବୁ ପୁରୁଣା ପରମ୍ପରା ସବୁ ପୁରୁଣା ପ୍ରଥା, ପୁରୁଣା ଆଦର୍ଶ । (ବରଦା ଆଗେଇ ଗଲେ ପାଦେ ପାଦେ ଓ ତାଙ୍କ ପଛରେ ଶାନ୍ତ ଦୁଇପାଦ ଯାଇ ଠିଆ ହୋଇଗଲେ ।)

ଶାନ୍ତ ॥ କିନ୍ତୁ...

ବରଦା ॥ ଆଉ କିନ୍ତୁ କ'ଣ ? ସେ ଗତାନୁଗତିକ ଚଳଣୀ ଓ ବିଶ୍ୱାସ ଭିତରେ ମୁଁ ନିଜେ ଅଣନିଃଶ୍ୱାସୀ ହୋଇଯାଉଚି । ସେ ପୁରୁଣା ଜମିଦାରୀ ମିଜାଜ ଏଇଠୁ ଲୋପ ପାଇବ । ଏଣିକି ନୂଆ କଥା— (କହୁ କହୁ ପୁଣି ମା'ଙ୍କ ଅଡ଼କୁ ଅସିଲେ)

ଶାନ୍ତ ॥ ତା' କେମିତି ହବ ?

ବରଦା ॥ କାହିଁକି ନ ହବ ? ଅମେ କାହିଁକି ସେଇ ପୁରୁଣା ବିଶ୍ୱାସର ଖୋଳକୁ ଘେଣ୍ଡାପଣ ବୋହି ବୋହି ଚ୍ଚାଲିଥିବୁ, ଚ୍ଚାଲି ଚ୍ଚାଲି ଗଡ଼ି ପଡ଼ୁଥିବୁ, ପୁଣି ଉଠି ଚ୍ଚାଲୁଥିବୁ ? ଅମେ କାହିଁକି ପୁରୁଣା ଖିଅଲ ପଛରେ ଅଣନିଃଶ୍ୱାସୀ ହୋଇ ଧାଇଁଥିବୁ ? ଧାଉଁ ଧାଉଁ ଥକି ପଡ଼ୁଥିବୁ । ପୁଣି ଧାଉଁଥିବୁ ଓ ଆମ ପରବର୍ତ୍ତୀ ବଂଶଧରଙ୍କୁ ବାଧ୍ୟ କରୁଥିବୁ—ଅମର ପଛରେ ଧାଉଁଥା । ଏଇଠୁ ଅରମ୍ଭ ହେବ ଏକ ନୂଆ ଚଳଣୀ । ଏଇଠୁ ଅଲଗା ହୋଇଯିବ ଅତୀତ ସହିତ ବର୍ତ୍ତମାନର ସବୁ ସମ୍ପର୍କ ।

(କ୍ରମେ ବାମ ଅଡ଼କୁ ଗଲେ)

ଶାନ୍ତ ॥ ତା' କଏ କରି ପାରିବ ? ତୁ ପାରିବୁ ? ସମ୍ପର୍କର ପୁରୁଣା ଖିଅ ତୁଟାଇ ପାରିବୁ ? (ନମ୍ର ସ୍ୱରରେ—) ମୋର ଯାହା ଆଶଙ୍କା......

ବରଦା ॥ କ'ଣ ?

ଶାନ୍ତ ॥ ନା, କିଛି ନାହିଁ ।

ବରଦା ॥ ଏଇଥି ପାଇଁ ତ ଆମର ଆଜି ଏ ଅବସ୍ଥା ।

ଶାନ୍ତ ॥ କୋଉଥି ପାଇଁ ?

ବରଦା ॥ ଏଇ—ମନ କଥା ନ କହି —ସାରା ଜୀବନ ରୁ ନିଜେ କୁହୁଳି କୁହୁଳି ମଲେ, ଅମକୁ ବି ଜାଳିଦେଲେ । କ'ଣ ଲଭ ହେଲା, ଏମିତି—

(ଟେବୁଲ୍ ପାଖକୁ ଆସି ବସିଲେ)

ଶାନ୍ତ ॥ କଏ ସେ ଲଭ କ୍ଷତିର ହିସାବ କରୁଚି ?

ବରଦା ॥ (ଶାନ୍ତଙ୍କ କଥା ପ୍ରତି ଧ୍ୟାନ ନ ଦେଇ—) ତାଙ୍କୁ ଯାହା ଯେତେବେଳେ କହିବାକୁ ଥିଲା, କହିଲେ କି ? ବରଂ କଥାରେ ନୀରବ ରହିଗଲେ । ସେଇଥିପାଇଁ ସେ ସାରା ଜୀବନ କେତେ ଉପେକ୍ଷା କରି ଅସିଛନ୍ତି । କେତେ ଏକା ନୁହେଁ —ତତେ, ମତେ, ଅମ ସମସ୍ତଙ୍କୁ ।

ଶାନ୍ତ ॥ ସମସ୍ତ କେତେ ହେଲା ? (ବରଦା ଉଠି ଠିଆହେଲେ)

ବରଦା  ।। ନା ତୁ ତାଙ୍କୁ କିଛି କହିଲୁ, ନା ଆମକୁ ବୁଝାଇ ଦେଲୁ । ସବୁବେଳେ ସେଇ କଥା—କିଛି ଭାବନା—ବାପା ରାଗିବେ—ବାପା ଦୁଃଖ କରିବେ । ସଦାବେଳେ 'ପିତା ଧର୍ମ, ପିତା ସ୍ୱର୍ଗ' ପଢ଼େଇଲୁ । ଏବେ ହେଲା କ'ଣ ?

ଶାନ୍ତ  ।। କ'ଣ ହେଲାଣି ଦେଖେଁ । (ଶାନ୍ତ ପିବାକୁ ବାହାରିଲେ)

ବରଦା  ।। ଥିଲା, ଥିଲା ହଠାତ୍ ବେଲୁନ୍ ଫାଟିଗଲା—

ଶାନ୍ତ  ।। ବେଲୁନ୍ ?

ବରଦା  ।। ଆଦର୍ଶ । ମିଛ ଆଦର୍ଶ । ଆଦର୍ଶର ବେଲୁନ୍ – ବାପାଙ୍କୁ କିଛି କହିବାନି, ସେ ଯାହା କଲେ ବି, କାରଣ ସେ ବାପା । ଅଜାଣତରେ ତାଙ୍କ ବିରୁଦ୍ଧରେ ମନ ଭିତରେ ଲୁଚି ଛପି ଯେତେ ଅସନ୍ତୋଷ ଥିଲା, ସବୁ ହଠାତ୍...

ଶାନ୍ତ  ।। ଏମିତି ହଠାତ୍ ରାଗନ୍ତି ? ତୁ ସେଦିନ ରାଗି ଯେମିତି ହେଲୁ...

ବରଦା  ।। ବାପା କ'ଣ କେବେ ଭାବିଥିବେ...

ଶାନ୍ତ  ।। କ'ଣ ?

ବରଦା  ।। ମୋ ପରି ପୁଅ ଦିନେ ଏମିତି ହେବ !
ନା, ମୁଁ ନିଜେ କେବେ ଭାବିଥିଲି ।

ଶାନ୍ତ  ।। ମୁଁ କିନ୍ତୁ ଠିକ୍ ଆଶଙ୍କା କରିଥିଲି । (ବସି ପଡ଼ିଲେ)

ବରଦା  ।। କାହିଁକି ?

ଶାନ୍ତ  ।। କାହିଁକି, କ'ଣ କହିବି ?

ବରଦା  ।। ପୁଣି ସେଇ କଥା ?

ଶାନ୍ତ  ।। ନା, ଆଜି ଆଉ କିଛି ଲୁଚାଇବିନି । (ସାମାନ୍ୟ ନୀରବତା ପରେ—) ତୋ ବାପା ତୋ'ରି ବୟସର ହୋଇଥାନ୍ତି । (ଝୁଲ୍‌ରୁ ଉଠି ପଡ଼ିଲେ) ତୁ ସେତେବେଳକୁ ଜନ୍ମ ହେବାର ଥାଏ । ତାଙ୍କ ବାପାଙ୍କ ସାଙ୍ଗରେ ଏଇ ଗଣ୍ଡଗୋଳ ଲଗାଇ ଥାଆନ୍ତି । ବୁଢ଼ା ବୟସରେ ସେ ଯେମିତି ଅସହାୟ ଭାବରେ ଦିନ କାଟିଲେ...

ବରଦା  ।। ଅସହାୟ ଭାବରେ ?

ଶାନ୍ତ  ।। ବୁଢ଼ାଙ୍କର ଆଗରୁ ତ ସ୍ତ୍ରୀ ଚାଲି ଯାଇଥାନ୍ତି—ମୁଁ ଆସିବା ଆଗରୁ । ଘରେ ପୋଇଲିଟିଏ ଥାଏ । ବୁଢ଼ାଙ୍କ ଖବର ବୁଝୁଥାଏ, ଘର ଚଳାଉଥାଏ । ତୋ ବାପା କୋଉଠୁ ଶୁଣିଲେ... (ଯାଉ ଯାଉ ଠିଆ ହୋଇଗଲେ)

ବରଦା  ।। କ'ଣ ?

ଶାନ୍ତ ॥ ସେଇ କୁଆଡ଼େ...
ବରଦା ॥ ଜେଜେମା'ଙ୍କୁ ମାର ଦେଇଚ ?
ଶାନ୍ତ ॥ ହଁ ! (ଆଶ୍ଚର୍ଯ୍ୟ ହୋଇ)କେମିତି ଜାଣିଲୁ ?
ବରଦା ॥ ନାଇଁ, ଏମିତି···।
ଶାନ୍ତ ॥ ତୋ ବାପା ଦିନେ ରାଗି ତାଙ୍କୁ ଘରୁ ବାହାର କରିଦେଲେ । ବୁଢ଼ୀଙ୍କୁ ଗାଳିଦେଲେ । ଅପମାନ ଦେଲେ । ସବୁ ଜମିବାଡ଼ି ନିଜ ଆୟତ୍ତକୁ ଆଣିଲେ । ବୁଢ଼ୀ ନିର୍ବୋଳାରେ ବସି ଖାଲି କାନ୍ଦନ୍ତି । ଦିନେ ଦିନେ ରାତିରେ ନିଦ ଭାଙ୍ଗିଲା ବେଳକୁ, ଅଗଣାରେ···
ବରଦା ॥ ବସି କାନ୍ଦୁଥାଆନ୍ତି ?
ଶାନ୍ତ ॥ ହଁ ! (ଆଶ୍ଚର୍ଯ୍ୟ ହୋଇ) କେମିତି ଜାଣିଲୁ ?
ବରଦା ॥ ସିଏ ଦିନେ ରାତିରେ ବାହାରକୁ ଆସିଲାବେଳକୁ—ବାପା ଏକୁଟିଆ ଅଗଣାରେ ବସି...
ଶାନ୍ତ ॥ କାନ୍ଦୁଥିଲେ ?
ବରଦା ॥ ହଁ !
ଶାନ୍ତ ॥ ସେ ବୁଢ଼ୀଙ୍କ ମନରେ ଯେମିତି ଆଘାତ ଦେଲେ, ବୁଢ଼ୀ ସେଇ ଯୋଗେ ଯେମିତି ଦୁଃଖରେ ମଲେ, ମୋର ଆଶଙ୍କା ଥିଲା—ଦିନେ ହୁଏତ ତୁ ତାଙ୍କୁ ସେମିତି...(ଚୌକିରେ ବସିଗଲେ)
ବରଦା ॥ ତା' ସହିତ ମୁଁ'ର କ'ଣ ସମ୍ପର୍କ ?
(ଶାନ୍ତଲତାଙ୍କ ମୁହଁ ମଳିନ ଦେଖାଗଲା । କମେ କମେ ସେ ଖୁବ୍ ଶଙ୍କାକୁଳା ଜଣାଗଲେ ।)
ବରଦା ॥ ବୋଉ !
ଶାନ୍ତ ॥ (ସ୍ଥିର ଦୃଷ୍ଟିରେ ଆଗକୁ ଚାହିଁଥାନ୍ତି—ଆଖିରେ ଭବିଷ୍ୟତର ଭୀତି) ଏଁ...
ବରଦା ॥ କ'ଣ ହେଲା ?
ଶାନ୍ତ ॥ (ଶଙ୍କିତ ମୁହଁରେ ଓଠ ଥରଗଲା) ନା, କିଛି ନାଇଁ ।
ବରଦା ॥ ବୋଉ ! କ'ଣ ହେଲା, କହୁନୁ···?
ଶାନ୍ତ ॥ ମୋର ଖାଲି ଆଶଙ୍କା...
ଭଗବାନ ନ କରନ୍ତୁ···(ଆଉ କହି ପାରିଲେନି)
ବରଦା ॥ କ'ଣ ?
ଶାନ୍ତ ॥ (ନୀରବ ରହିଲେ । ତାଙ୍କର ସ୍ଥିର ଦୃଷ୍ଟିରେ ଅସ୍ଥିରତାର ଛାଇ)

ବରଦା ।। ବୋଉ ! କ'ଣ ଆଶଙ୍କା କରୁଚୁ ?
ବାପାଙ୍କର...

ଶାନ୍ତ ।। ନା ! (ସାମାନ୍ୟ ନୀରବତା ପରେ ଥରିଲା କଣ୍ଠରେ—)
ତୋ ବାପା ବୁଢ଼ାଙ୍କୁ ଯେମିତ...
ସେ ଆଜ ନଜେ ସେମିତ...
ସେତେବେଳକୁ ଭୁ ଜନ୍ମ ହବାର ଥାଏ—
ଆଜ ତୋର ସନ୍ତାନ ହବାର ଅଛୁ...
ମୁଁ ତାଙ୍କୁ କହଲ—
ତମେ ବରଦାର ଅମଙ୍ଗଳ ଚନ୍ତା କରବନ—
ବୋହୂ...

[ଅନ୍ତରାଳରୁ ଶୁଣାଗଲା ପ୍ରସୂତର ଗର୍ଭବେଦନାଜନତ ଅସ୍ପଷ୍ଟ ଆର୍ତ୍ତଚତ୍କାର—ଓଃ, ମଶଯିବ ସିଷ୍ଟର୍...ମଶଯିବ ··ସିଷ୍ଟର୍, ମଶଯିବ... ଓଃ...ଓଃ...ମଶଯିବ ଲେ, ବୋଉ·· ଓଃ...ଓଃ....ଆଉ ସମ୍ଭାଳ ପାରବନ । ଓଃ...ଶାନ୍ତଲତା ତରତର ହୋଇ ଗ୍ଳଲଗଲେ । ବରଦାପ୍ରସନ୍ନ ଯେଉଁଠାରେ ଠିଆ ହୋଇଥିଲେ, ସେଠାରେ କଛୁ ସମୟ ସ୍ଥିର ହୋଇଗଲେ । କମେ ସେ ଚନ୍ତ୍ତ ଜଣାଗଲେ ଓ ତାଙ୍କର ମନ ଭାବାକ୍ରାନ୍ତ ହେଲ ।]

ବରଦା ।। (ଧୀରେ ଧୀରେ ଦୁଇପାଦ ଆଗକୁ ଆସେଇ—)
ସେ ଯେମିତ ତାଙ୍କ ବାପାଙ୍କୁ...
ନଜେ ସେମିତ ହେବୁଛନ୍ତ—
କାଲ ମରେବ...
(କଛୁ ସମୟ ପରେ—ମନକୁ ସହଜ ଓ ହାଲୁକା କର)
ନା, ମିଛ ! ମିଛ !
(ପୁଣି ଗମ୍ଭୀର ଜଣାଗଲେ)
କାଲ ସକାଳେ....ମତେ....ମୋ ସନ୍ତାନ...
(ନଶ୍ଚିତ ସ୍ୱରରେ—)
ନା, ମିଛ ! ମିଛ ଭୟ !
ମନଗଢ଼ା ଭୟ ! ଏମିତ ଘଟ ହଉଥା'ନ୍ତା....

[ହାଲୁକା ମନରେ ଉପରକୁ ମୁହଁ କରି ଟୁଲ୍ ଆଡ଼କୁ ଫେରିଲେ । ନିଜକୁ ନିଜେ କହିଲେ,—"ବରଦା ପଟ୍ଟନାଏକ ! ଡରେ ମତ୍ । କୁଛ୍ ନେହିଁ ହୋଗା ।" ନିଜ ମନକୁ ବୁଝାଇ ଦେଲେ ଓ ଟୁଲ୍ ଉପରେ ବସିଲେ । ପୁଣି ସେଇ ଚିନ୍ତା ମନକୁ ଛୁଇଁଲା । ହାତମୁଠା ଉପରେ ମୁହଁ ଭର ଦେଇ ତଳକୁ ଚାହିଁ ରହିଲେ ।

ମଞ୍ଚର ଆଲୋକ ନୀଳାଭ ହେଲା ।

ବରଦା ପୂର୍ବପରି ବସି ରହି କହିଲେ—କିଏ ?

ଦକ୍ଷିଣ ପାଖରୁ ପ୍ରବେଶ କଲେ ବିବେକ ଏବଂ କହିଲେ—'ବିବେକ' ।

ବିବେକ ତରୁଣ ନୁହନ୍ତି—ପ୍ରାପ୍ତ ବୟସ୍କ । ବିଚାରବନ୍ତ ।

ପିନ୍ଧିଥାନ୍ତି ଧଳା ପାଇଜାମା ଓ ଧଳା ପଞ୍ଜାବୀ ।

ପରେ ପରେ ପ୍ରବେଶ କଲେ ମାନସ ।

ବୟସ କିଶୋର । ମନ ବି ସେହିପରି ।

ଦେହରେ ଆଧୁନିକ ପୋଷାକର ପରିପାଟୀ ]

ବିବେକ ।। ବିବେକ

ମାନସ ।। ବିବେକ ?

ବିବେକ ।। (ମାନସଙ୍କୁ ନ ଚାହିଁ)—ବିବେକ ପଟ୍ଟନାୟକ । ତମେ ?

ମାନସ ।। ଏଠି କେମିତି ?

ବରଦା ।। ମାନେ ? (ମାନସଙ୍କୁ ଚାହିଁଲେ)

ମାନସ ।। ମୁଁ ତ କେବେ ଆଗରୁ···!

ବରଦା ।। ମନେ ନ ଥିବ । ତମେ...?

ମାନସ ।। ମୁଁ ବରଦାପ୍ରସନ୍ନ ପଟ୍ଟନାଏକ ।

ବିବେକ ।। ନା ।

ମାନସ ।। ନା ମାନେ ?

ମାନସ ।। ତମେ ବରଦାପ୍ରସନ୍ନ ହୋଇ ପାରିନ ।

ମାନସ ।। ଆଉ ?

ବିବେକ ।। ମାନସ । ମାନସ ପଟ୍ଟନାଏକ ।

ମାନସ ।। କେମିତି ଜାଣିଲ ?

ବିବେକ ।। ଜାଣି ହୁଏ ।

ମାନସ ।। ଆଉ କ'ଣ ଜାଣିଛ ?

ବିବେକ ।। ଅନେକ କିଛି ।

ମାନସ ॥ ଅନେକ ! ଯଥା—?

ବିବେକ ॥ ଯଥା—ତୁମେ ଉଚ୍ଛୃଙ୍ଖଳ, ଉଦ୍‌ଭ୍ରାନ୍ତ ।

ମାନସ ॥ ତମେ ?

ବିବେକ ॥ ବିପରୀତ । କାରଣ ମୁଁ ଦେଖିଆସିଚି, ଯୌବନର ରଙ୍ଗମାନ । ମଣିଷର ଗତିବିଧିମାନ ।

ମାନସ ॥ ହୁଁ ।
ଅନ୍ୟାୟର ପ୍ରତିବାଦ କରିବା କ'ଣ ଉଚ୍ଛୃଙ୍ଖଳତା ?

ବିବେକ ॥ ନା, ସୌଜନ୍ୟ ହରାଇବା···।
ସମସ୍ତଙ୍କ ବିରୁଦ୍ଧରେ ବି ପ୍ରତିବାଦ କରାଯାଏ ନା ।
ସେପରି ସ୍ଥଳେ ବି....

ମାନସ ॥ ବାପାଙ୍କ ବିରୁଦ୍ଧରେ ?

ବିବେକ ॥ ନା । କାରଣ ସେ ବାପା । ସେ···

ମାନସ ॥ ସେ ଥରକୁଥର ଭୁଲ୍ କଲେ···

ବିବେକ ॥ ସହିବାକୁ ହବ । ନ ସହି ସେଇ ଭୁଲ୍ ହେଉଚି ।

ମାନସ ॥ କେତେ ଏମିତି ସହି ହୋଇଥାନ୍ତା ?
ସହିବାର ତ ଗୋଟାଏ ସୀମା ଅଛି ?
ଘିହୁଁ ଘିହୁଁ କେତେ ସମ୍ପତ୍ତି ଉଡ଼ିଗଲା ?

ବିବେକ ॥ ପରେ ଯେତେବେଳେ ଅନୁତାପ କରିବାକୁ ପଡ଼ିବ ?

ମାନସ ॥ କାହିଁକି ?

ବିବେକ ॥ ନିଜ ପୁଅ ଯେତେବେଳେ ସେମିତି କହିବ ?
ସେମିତି ଉଚ୍ଛୃଙ୍ଖଳ ହବ··· ? ଶତ୍ରୁତା କରିବ ?

ମାନସ ॥ ସହିଥିଲେ ବି ସେଇ ଅନୁତାପ କରିବାକୁ ପଡ଼ିଥାନ୍ତା ।
କାରଣ ସେଇ ପୁଅ ପଚାରିଥା'ନ୍ତା—
(ଆଗାମୀ ଯୁଗର ଉଚ୍ଛୃଙ୍ଖଳ ଯୁବକସୁଲଭ ଭଙ୍ଗୀରେ ବରଦାପ୍ରସନ୍ନଙ୍କୁ ପଚାରିଲେ—)
ଘରେ ତ ଖାଇବାକୁ ନାହିଁ । ଆମ ପାଇଁ ବାହାରେ ଚାକିରି ନାହିଁ । ଆମେ ଚଳିବୁ କେମିତି ? ଆମେ ବଞ୍ଚିବୁ କେମିତି ? ତମ ବାପା ସବୁ ସମ୍ପତ୍ତି ଉଡ଼େଇ ଦେଲାବେଳେ, ତମେ ଯଦି ଏମିତି ସାଧୁ ହୋଇଗଲ, ଆମକୁ ଜନ୍ମ ଦେଇଥିଲ କାହିଁକି ? ଆମେ ଏବେ କରିବୁ କ'ଣ ?
(ତା'ପରେ ବିବେକଙ୍କ ପାଖକୁ ଯାଇ ସାମନାସାମନି ଠିଆ ହୋଇ ସ୍ୱାଭାବିକ ସ୍ୱରରେ—)

ପୁଣି ସେଇ ଏକା ଶଠ କଥା । (ବରଦା ଇଚ୍ଛା କଲେ ମଞ୍ଚରୁ ଧୀରେ ଧୀରେ ଚାଲି ଯାଇପାରନ୍ତି ।)

ବିବେକ ॥ ତୁମେ ତ ସେ କଥା କହିନଥାନ୍ତ । ତୁମେ ତ ସେ ଦିନେ ନିଜ ଗୋଡ଼ରେ ଠିଆ ହେଇ ପାରିଥା'ନ୍ତ; କିନ୍ତୁ ଏବେ ? ବାପାଙ୍କ ଅସନ୍ତୋଷରେ ଜଳି ଜଳି ମରିବାକୁ ପଡ଼ିବ । ସେ ପାପ କୁଆଡ଼େ ଯିବ ? (ଉଭୟେ ସାମନାସାମନି ଠିଆ ହୋଇଥାନ୍ତି )

ମାନସ ॥ ପାପ ଗୋଟାଏ କ'ଣ ?—ମିଛ ବାଘ ।
ପାପ ଗୋଟାଏ ମିଛ ବାଘ । କାଠର ଚଢେଇବାଘ ।

(ଏହାପରେ ମାନସ କ୍ରମେ ବାମ ପାଖକୁ ଗଲେ ଓ ବିବେକ ତାଙ୍କର ଅନୁସରଣ କଲେ ।)

ସେ କେବଳ ଦୁର୍ବଳମନା ଲୋକମାନଙ୍କୁ କଟ୍‌ମଟ୍ କରି ଚାହେଁ । ନିଶ ମୋଡ଼େ । ଲାଞ୍ଜ ପିଟେ ।
(ତା'ପରେ ବାମରୁ ଦକ୍ଷିଣ ପାଖକୁ ଅର୍ଦ୍ଧ ବୃତ୍ତାକାର ପଥରେ ପାଦେ ପାଦେ ହୋଇ ଆଗେଇଲେ । ବିବେକ ତାଙ୍କର ଅନୁସରଣ କରୁଥା'ନ୍ତି)
ଏବଂ ଭୀରୁ ଲୋକଙ୍କୁ—ଦାନ୍ତ ଦେଖାଏ, ଓଠ ଚାଟେ, ଗର୍ଜନ କରେ ଏବଂ ଅତି ଭୀରୁ ଲୋକଙ୍କ ଉପରକୁ କୁଦା ମାରେ । ମାଡ଼ିବସେ । ପିଣ୍ଡରୁ ପ୍ରାଣ ଗଲା ଯାଏଁ ଫୁଲା ଫୁଲା କରି ମାଂସ ଖାଉଥାଏ ।

ବିବେକ ॥ ଏବଂ ନିର୍ଭୀକ ଲୋକ ଦେଖିଲେ ?
(ମାନସ ବିବେକଙ୍କୁ ଚାହିଁଲେ ଓ ଉଭୟେ ସାମନାସାମନି ହୋଇ ଠିଆହେଲେ)
ନିର୍ଭୀକ ଲୋକଙ୍କ ପାଇଁ ସେଇ ବାଘ ସାଧୁ ହୋଇଯାଏ । ଚାନ୍ଦ୍ରାୟଣ ବ୍ରତ କରେ । ସୁନାର କଙ୍କଣ ଦେଖାଏ । ଦାନ କରିଦେବ ବୋଲି କହେ । ତା'ପରେ···
(ବାମ ପାଖକୁ ଧୀରେ ଧୀରେ ଗଲେ । ପଛେ ପଛେ ମାନସ ।)
ତା'ପରେ ପଦ୍ମପୋଖରୀକୁ ପଠାଇ ଦିଏ ଗାଧୋଇ ଆସିବାକୁ । ବାଘ ଜାଣେ, ସେ ଲୋକ ନିଶ୍ଚୟ ପଦ୍ମପୋଖରୀକୁ ଯିବ ଓ ସେଠି ପଙ୍କରେ ପୋତି ହେଇଯିବ । ଆଉ ବାହାରି ଆସିବାର ଉପାୟ ନ ଥିବ । ତା'ପରେ ସେ ଦୁର୍ବଳମନା ଲୋକଙ୍କୁ ଖାଇଲା ପରି ଫୁଲା ଫୁଲା କରି, ଫୁଲା ଫୁଲା କରି ତା'ର ମାଂସ ଖାଇଯାଏ ।

ମାନସ ॥ (ମଞ୍ଚର ଗୋଟିଏ ପାଖକୁ ଗଲେ) ତା'ହେଲେ ସତ କଥାରେ—
କହିଲେ ପାପ, ନ କହିଲେ ବି ପାପ। କହିଲେ ଦୋଷ, ନ କହିଲେ ବି ଦୋଷ।

ବିବେକ ॥ ସେ ତାଙ୍କ ବାପାଙ୍କୁ ଯେମିତି କନ୍ଦାଇଥିଲେ, କଳେ ଯେମିତି କାନ୍ଦୁଛନ୍ତି। ତାଙ୍କୁ ଏବେ ଯେ କନ୍ଦାଇଛ, ସେ ରକ୍ଷା ପାଇଯିବ କେମିତି ?

ମାନସ ॥ ସେ ପାପ କରିଥିଲେ, ଶାସ୍ତି ପାଇବେ ବୋଲି ଆମକୁ କାହିଁକି ପାପ କରିବାକୁ ପଡ଼ୁଛି ? ଆମ ପୁଅ ବି ଯେମିତି ପାପରେ ପଡ଼ିବ। ତା'ପରେ ତା' ପୁଅ—
ତା'ହେଲେ ଏ ବଂଶରେ ଜନ୍ମ ହେବା ପାପ। ମୁଁ ତ ଇଚ୍ଛା କରି ଏ ବଂଶରେ ଜନ୍ମ ହୋଇନାହିଁ। ମୁଁ କାହିଁକି କାହାପାଇଁ ପାପର ବୋଝ ବୋହି ବୁଲିଥିବି ?
(ମାନସ ମଞ୍ଚର ବାମ ପାଖେ ଓ ବିବେକ ଡ଼ାହାଣ ପାଖେ ଠିଆ ହେଲେ। ମାନସଙ୍କ ଉପରେ ନାଲି ଓ ବିବେକଙ୍କ ଉପରେ ଉଜ୍ଜ୍ୱଳ ଆଲୋକପାତ ହେଲା।)

ମାନସ ॥ ମୁଁ ଅସ୍ୱୀକାର କରୁଛି ଏ ବଂଶକୁ, ଏ ପରିବାରକୁ, ଏ ସମାଜକୁ, ଏ ପରମ୍ପରାକୁ, ମୁଁ କାହାର ନୁହେଁ। ମୁଁ ବିଚ୍ଛିନ୍ନ। ମତେ ଏଠୁ ମୁକ୍ତି ଦରକାର...ମୁଁ ଗଢ଼ିବି ମୋର ସମାଜ...

ବିବେକ ॥ (ଉଜ୍ଜ୍ୱଳ ଆଲୋକରେ ସ୍ଥାଣୁ ପରି ଠିଆହୋଇ ଗମ୍ଭୀର ସ୍ୱରରେ କହିଲେ—)
ଯେଉଁଆଡ଼େ ଗଲେ ବି ପାପରୁ ନିସ୍ତାର ନାହିଁ।
(ପ୍ରତିଧ୍ୱନିତ ହେଲା—ପାପରୁ ନିସ୍ତାର ନାହିଁ—ପାପରୁ ନିସ୍ତାର ନାହିଁ)
ମୁକ୍ତି କାହିଁ ? ମୁକ୍ତି ଖୋଜି ବୁଲିଲେ ମୁକ୍ତିର ଜଣାରେ ପୁଣି ଛନ୍ଦି-ହୋଇ ରହିବ।
ପାପ ପୁଣ୍ୟର ସଂସାରରୁ କୁଆଡ଼େ ଯିବ ?
(ପ୍ରତିଧ୍ୱନି—କୁଆଡେ ଯିବ। କୁଆଡେ ଯିବ)

ମାନସ ॥ ନା। ନା
[ପୂର୍ବ ଆଲୋକ-ସମ୍ପାତ ବନ୍ଦ ହୋଇ ମଞ୍ଚ ସାଧାରଣ ଉଜ୍ଜ୍ୱଳ ଆଲୋକରେ ଆଲୋକିତ ହେଲା।
ବିରଜା ଉଚ୍ଚ ସ୍ୱରରେ ନା' ନା' କହି ଆଗେଇ ଗଲେ। ମାନସ ଓ ବିବେକ ନିସ୍ତେଜ ହେଲା ପରି ଆସିବା ପଥରେ ଫେରିଗଲେ। ]

ବରଦା ॥
ନା, ନା, ନା
ପାପ ମିଛ । ପୁଣ୍ୟ ମିଛ ।
ପାପ ପୁଣ୍ୟ ଏଇ ମଣିଷର କଳ୍ପନା ।
ଏ ମୁଣ୍ଡ ଭିତରେ ପାପ ପୁଣ୍ୟର ଧାରଣା
ପୁରାଇ ଦିଆଯାଇଚ୍ଛି । ସେଥିପାଇଁ ମଣିଷ
ଡ଼ରି ଡ଼ରି ମରୁଚ୍ଛି—ଜଳି ଜଳି ମରୁଚ୍ଛି ।
ମିଛ । ମିଛ । ସବୁ ମିଛ ।
ସତ ହେଉଚ୍ଛି, କେବଳ ବଞ୍ଚିବା ।
ସତ ହେଉଚ୍ଛି କେବଳ ବଞ୍ଚି ଜାଣିବା ।
ଏଠି ବଞ୍ଚିବାକୁ ହେଲେ, ଭାଙ୍ଗି ଦେବାକୁ ହେବ ପୁରୁଣା ପରମ୍ପରାକୁ ।
ଭାଙ୍ଗିଦେବାକୁ ପଡ଼ିବ ପୁରୁଣା ବିଶ୍ୱାସର ମୋଟା ଖୋଳପାକୁ ।
ତା'ପରେ ଏ ସମାଜକୁ ଯେ ଆସିବ, ସେ ହେବ ଏକ ନୂଆ ମଣିଷ ।
ନୂଆ ରୂପର ମଣିଷ । ବଂଶର ପରିଚୟରେ ସେ ପରିଚିତ ହେବ ନାହିଁ ।
ସେ ନିଜେଇ ହେବ ତା' ନିଜର ପରିଚୟ !
(ଅନ୍ତରାଳରୁ 'ବରଦା', 'ବରଦା' ବୋଲି ଡାକିଲେ ଶାନ୍ତିଲତା । ସେ ଡ଼ାକ ଶୁଣି ସେ ସ୍ୱାଭାବିକ ଅବସ୍ଥାକୁ ଆସିଗଲେ ଏବଂ ଷ୍ଟୁଲ୍ ଉପରେ ବସି ପଡ଼ିଲେ ।)

ଶାନ୍ତି ॥ (ପ୍ରବେଶ କରି—) ବରଦା ! ବରଦା !
ପୁଅ ହୋଇଚି । ପୁଅ, ମୁଁ କହୁଚି—ପୁଅ ହବ । ମାଆ ପିଲା ଦୁହେଁ ଭଲ ଅଛନ୍ତି । (ବରଦା ଠିଆହୋଇ ପଡ଼ିଲେ) ତୁ ଟିକିଏ ଯା'—ବାପାଙ୍କ ପାଖରେ ଥା' । ତାଙ୍କ ଅବସ୍ଥା ଆଜି ଭଲ ନାହିଁ । ଏଇନେ ସେ ଖୁବ୍ ଛଟପଟ ହେଉଚ୍ଛନ୍ତି । ଭୁଲିଁଟାରେ ପଡ଼ି ଘୁଷୁରୁଚ୍ଛନ୍ତି । ଭୟ ହେଉଚ୍ଛି—କେତେବେଳେ କ'ଣ ଥାଏ । ତୁ ଟିକିଏ ପାଖରେ ଥା' ।
(ପ୍ରସ୍ଥାନ)

ବରଦା ॥ (ମୁହଁ ସରସ ଦିଶୁଥାଏ । ସରସ ମନରେ ପାଦପ୍ରଦୀପ ଆଡ଼କୁ ଦୁଇପାଦ ଆଗେଇ ଗଲେ । ଠିଆହେଲେ । ସରସ ଓଠ ଧୀରେ ସଙ୍କୁଚିତ ହୋଇ ଆସିଲା ।)
ଦୁର୍ଗାପ୍ରସନ୍ନ ! ନା, ଦୁର୍ଗାପ୍ରସନ୍ନ ନୁହେଁ । ଅସମ୍ଭବ...

ଶାରଦାଙ୍କ ସ୍ୱର—ଅସମ୍ଭବ ନୁହେଁ—ଦୁର୍ଗାପ୍ରସନ୍ନ ତତେ ବାଲ୍ ଦେଇଥା କରିବ ।

ବରଦା ॥ ବାପାଙ୍କର ଦେହ ଆଜି ଭଲ ନାହିଁ । ଆଜି ସ୍ୱର କଷ୍ଟ ହେଉଚ —
ଛଟପଟ ହେଉଛନ୍ତି । ମସ୍ତକରେ ମାଛି ପଡ଼ୁଥିଲା ପରି ? ପଙ୍କରେ ପଡ଼ି
ପୋକ ଗୁଡିପିଡି ହେଲା ପରି ?
(ବରଦାଙ୍କୁ କ୍ଳାନ୍ତ ଲାଗିଲା । ଦେହ ଅବଶ ଜଣାଗଲା । ମୁଣ୍ଡ ଝିମିଝିମି
ଲାଗିଲା । ସେ ତଳେ ଅସ୍ତେ ବସି ପଡ଼ିଲେ ।)

ବରଦା ॥ ସେ ଘରେ ପୁଅ ତା' ମାଆ ପାଖରେ ଗଳୁଥିବ । ଆଉ ଘରେ ବାପା
ଭୂଇଁରେ ଗଡ଼ୁଛନ୍ତି । ଭୂଇଁରେ ଘୁଷୁରୁଛନ୍ତି । ଛଟପଟ ହେଉଛନ୍ତି ।
କହୁ କହୁ ସେ ନିଜେ ଭୂଇଁରେ ଘୁଷୁରିବାକୁ ଆରମ୍ଭ କଲେ । ଏପାଖ
ସେପାଖ ହେଲେ । ଭୂଇଁରୁ ଉଠିବାକୁ ଚେଷ୍ଟା କଲେ— ଉଠି
ପାରିଲେ ନାହିଁ ।]

ଶାନ୍ତ ॥ (ଛୁଆଙ୍କୁ ଧରି ଭିତରୁ କହି କହି ଆସିଲେ—)
ବରଦା ! ଦେଖ, ଆଜି ଆଶ୍ୱିନ ଦୁର୍ଗାଷ୍ଟମୀରେ ଜନ୍ମ ହୋଇଚ । ତୋ
ବାପା ଠିକ୍ ନାଁ । କହୁଥିଲେ—ଦୁର୍ଗାପ୍ରସନ୍ନ ।
(ବରଦାଙ୍କୁ ତଳେ ଏମିତି ଅବସ୍ଥାରେ ଦେଖି)
ବରଦା ! ଇଏ କ'ଣ ? କ'ଣ ଏମିତି ହଉଚୁ ?

ବରଦା ॥ (ଅସହାୟ ଭାବରେ ହସିଲେ—)
ନାଁ, କିଛି ନାହିଁ । ଏମିତି ଖୁସିରେ । ଖୁସିରେ । ଦୁର୍ଗାପ୍ରସନ୍ନ ନାହିଁ ?
ଦୁର୍ଗାପ୍ରସନ୍ନ···

(ତଳୁ ଉଠିବାକୁ ଚେଷ୍ଟା କରୁଥାଆନ୍ତି)

—ଅନ୍ଧକାର—



# କୌଣସି ଏକ ନାଟକ ପାଇଁ

ବିଜୟ ମିଶ୍ର

| ମୂଳ ଚରିତ୍ର ।। | ନାଟକୀୟ ଚରିତ୍ର ।। |
| --- | --- |
| ଦୀନବନ୍ଧୁ | ହରିବିଳାସ |
| ସନ୍ତୋଷ | ଅରୂପ |
| ସୁରଞ୍ଜନ | ସତୀଶ |
| କୁମୁଦ | ଦୀପଙ୍କର |
| ସ୍ମାରକ | |
| ସହକାରୀ ନିର୍ଦ୍ଦେଶକ | |
| ନିର୍ଦ୍ଦେଶକ | |
| ଗ୍ୱ'ବାଲ୍ଲ | |
| ସୁରଭି | ଚନ୍ଦ୍ରା |
| ବନ୍ଦନା | ସୁତପା |

[କୌଣସି ଏକ ନାଟକ ରିହର୍ସାଲ୍‌ର ପୂର୍ବ ମୁହୂର୍ତ୍ତ । ଅଭିନେତା ଅଭିନେତ୍ରୀମାନେ ଏକାଠି ନିଜ ନିଜ ଭିତରେ ଗଳ୍ପଗୁଜବ କରୁଛନ୍ତି । ସ୍ମାରକ ବହି ଧରି ମନେ ମନେ ପଢ଼ୁଛନ୍ତି ଓ ଘରସାରା ବୁଲାବୁଲି କରୁଛନ୍ତି ।

ଏଇଟା ଗୋଟାଏ ରିହର୍ସାଲ୍-ରୁମ୍ । ଘର ଭିତରେ କେତେ ଖଣ୍ଡ ଚଉକି ଓ ବେଞ୍ଚ ଛଡ଼ା ରୁମ୍‌ଟି ଫାଙ୍କା । କଣକୁ ଗୋଟାଏ ଟୁଲେଇ । ତା' ଉପରେ ଗୋଟିଏ କାଚ ଗ୍ଲାସ ଢଙ୍କା ହୋଇଛି । ଘରଟିର ମଝିଟି ରିହର୍ସାଲ ପାଇଁ ଫାଙ୍କା ରଖା ଯାଇଛି । ଭିତରୁ ଟିକିଏ ବ୍ୟସ୍ତ ହୋଇ ପଶିଆସିଲେ ସହକାରୀ ନିର୍ଦ୍ଦେଶକ, ମନମୋହନ ବାବୁ । ସମସ୍ତେ ତାଙ୍କୁ ସୌଜନ୍ୟ ନମସ୍କାର ଇତ୍ୟାଦି କରି କଥା ଆରମ୍ଭ କଲେ ।]

| | |
|---|---|
| ସୁରଭି | ॥ ଅଧ ଘଣ୍ଟାଏ ହବ ଆସି ବସିଛୁଁ । |
| ବନ୍ଦନା | ॥ ଅଥଚ କାହାର ଦେଖା ନାହିଁ । ନା ଅପଣଙ୍କର, ନା ଡିରେକ୍ଟରଙ୍କର । |
| ମନ | ॥ ଡକେଇ ଥିଲେ ମତେ କହିବାକୁ, ତାଙ୍କର ଆଜ ଆସୁ ଆସୁ ଡେରି ହବ । |
| ସୁରଭି | ॥ ଅଥଚ ରିହର୍ସାଲ୍ ଆରମ୍ଭ ଦିନ ସମସ୍ତ ଙ୍କୁ ନ ବନ୍ଧସ୍ୱରେ ବେଶ୍ ନାତିଦୀର୍ଘ ବକ୍ତୃତାଟିଏ ଦେଲେ । |
| ସୁରଞ୍ଜନ | ॥ Do what I say. (ଆମ୍ଭେ ଯାହା କହୁଅଛୁଁ, ତାହା ପାଳନ କର ।) |
| କୁମୁଦ | ॥ Do not do what I do. (ମାତ୍ର ଆମ୍ଭେ ଯାହା କରୁଅଛୁଁ, ତାହା କର ନାହିଁ ।) |
| ବନ୍ଦନା | ॥ ହୁପୋକ୍ରାସି ! |
| ଦୀନ | ॥ ଦେଖୁଚନ୍ତି, କେତେ ସମୟ ହେଲ ? |
| ବନ୍ଦନା | ॥ କେତେ ଜାମ ଗ୍ରୁଡ଼ି ମଣିଷ ଦଉଡ଼ି ଦଉଡ଼ି ଆସିଲାବେଳକୁ କ'ଣ ନା— |
| ସୁରଭି | ॥ ଡିରେକ୍ଟର ନାହାଁନ୍ତି । |
| ଦୀନ | ॥ କ'ଣ କରାଯାଇ ପାରେ ? ଆସିଷ୍ଟାଣ୍ଟ୍ ଡିରେକ୍ଟର ବି ଡେଙ୍ଗରେ— |
| ଗ୍ଲ'ବାଲ | ॥ ଗ୍ଲ' । |
| ସୁରଭି | ॥ ( ଗ୍ଲ' ପିଉ ପିଉ ମୁହଁ କୁଞ୍ଚିତ କରି— ) ଛି ଛି, କି ଗ୍ଲ' ଇଏ ? |
| ବନ୍ଦନା | ॥ ପିଇ ଦିଅ, ପିଇ ଦିଅ, ନିଃଶ୍ୱାସ ବନ୍ଦକରି, ଔଷଧ ଗିଳିଲା ଭଳି । ଯେମିତି ହଉ, ଗଲା ସେ ପାଖକୁ ଟପେଇ ଦିଅ । |
| ଗ୍ଲ'ବାଲ | ॥ କେତେ ଗରାଖ ଖାଇଗଲେ, କେହି ପଦେ କହିଲେନି । |
| ସଂଜୟ | ॥ ନାହିଁ, ସମସ୍ତେ ଖାଲି ସହିଯା'ନ୍ତି । |
| ସୁରଭି | ॥ ଏ ଭଳି କମେଣ୍ଟ୍‌କୁ ଅସଭ୍ୟତା ବୋଲି ମଧ୍ୟ କୁହାଯାଇ-ପାରେ । |
| ମନ | ॥ ଜଲ୍‌ଦି ଶେଷ କରନ୍ତୁ, ରିହର୍ସାଲ୍ ଆରମ୍ଭ ହବ । |
| ସ୍ମାରକ | ॥ ଆଜ କ'ଣ ପୁଣି ମୂଳରୁ ? |

ପୁରଞ୍ଜନ ।। ଉପାୟ ନାହିଁ । କାଲି ଯେଉଁଠି ପହଞ୍ଚିଥିଲେ ବି ଆଜି ପୁଣି ସେଇ ମୂଳରୁ । ଷ୍ଟେଜ୍ ରିହର୍ସାଲରେ ସେଇ ମୂଳରୁ । ପୁଣି ଷ୍ଟେଜ୍ ଉପର ବି ସେଇ ମୂଳରୁ ।

ସ୍ମାରକ ।। ତା'ହେଲେ ? ପୁଣି ସେଇ ପ୍ରଥମ ଅଙ୍କ, ପ୍ରଥମ ଦୃଶ୍ୟ । ହରବିଳାସ ବାବୁଙ୍କ ଘର ।

ମନ ।। (ଚା'ବାଲାକୁ) ତୁ ଆଉ ଠିଆ ହେଲୁ କାହିଁକି ? ଯା' ଚା' କପ୍ ନେଇ ଯା'।

ଚା'ବାଲା ।। (ଚା' କପ୍ ଓ କେଟ୍‌ଲି ସଂଗ୍ରହ କରୁ କରୁ) ଦରକାର ପଡ଼ିଲେ ଏଇଠୁ ଡ଼ାକଟାଏ ମାରିଦେବେ, ମୁଁ ଚା' ଧରି ପହଞ୍ଚି ଯିବି ।

ସୁରଭି ।। ଆଉ ଗୁଡ଼ାଏ ଅଖାଦ୍ୟ ପରିବେଷଣ କରିବ ।

ମନ ।। ଯାଉଚୁ ନା । (ଚା'ବାଲା ଚାଲିଗଲା)

ସ୍ମାରକ ।। ହରବିଳାସ ବାବୁଙ୍କ ସ୍ତ୍ରୀ ଚନ୍ଦ୍ରା ବସି ସିଲେଇ କରୁଚନ୍ତି । ସମୟ ସଂଧ୍ୟା, ଏଇ ସମୟରେ ଘର ଭିତରକୁ ପଶି- ଆସିଲେ ନାୟକ ଅରୂପ କୁମାର ।

ଅରୂପ (ସନ୍ତ୍ରସ୍ତ) ।। ସୁତପା ? ସୁତପା କାହିଁ ଗଲ ?

ଚନ୍ଦ୍ରା (ସୁରଭି) ।। ତା' ସାଙ୍ଗରେ ତୁମର କ'ଣ ଦରକାର ?

ଅରୂପ (ସନ୍ତ୍ରସ୍ତ) ।। ଆଜି ରବିବାର, ତୁମେ ଜାଣି ନାହଁ ?

ଚନ୍ଦ୍ରା (ସୁରଭି) ।। ସେଇଠୁ କ'ଣ ହେଲ ?

ଅରୂପ (ସନ୍ତ୍ରସ୍ତ) ।। ସେ ମୋତେ କଥା ଦେଇଥିଲା—

ଚନ୍ଦ୍ରା (ସୁରଭି) ।। ସେ ତ କାଲିର ଘଟଣା—

ଅରୂପ (ସନ୍ତ୍ରସ୍ତ) ।। ହଁ, କାଲି ସଞ୍ଜବେଳେ ।

ଚନ୍ଦ୍ରା (ସୁରଭି) ।। କାଲି ସନ୍ଧ୍ୟାଠାରୁ ଆଜି ସନ୍ଧ୍ୟା, ଚବିଶ ଘଣ୍ଟା ତଫାତ୍ ।

ଅରୂପ (ସନ୍ତ୍ରସ୍ତ) ।। ଚବିଶ ଘଣ୍ଟା ଭିତରେ କ'ଣ ମଣିଷର ମନ ବଦଳି ଯାଏ ?

ଚନ୍ଦ୍ରା (ସୁରଭି) ।। ତମ ମନ ନ ହୋଇପାରେ; କିନ୍ତୁ ତା'ର ଯେ ବଦଳିବ ନାହିଁ, ସେ କଥା କିଏ କହିପାରିବ ?

ମନ ।। ନା ।

ସଂଜୟ ।। କ'ଣ ହେଲ ?

ମନ ।। ଏଠୁ ନୁହେଁ ।

ସ୍ମାରକ ।। ଆଉ ତା'ହେଲେ କୋଉଠୁ ? ତା'ହେଲେ ସେଇ କ୍ଲାଇ- ମାକ୍ସ ସିନ୍‌ଟା ହଉ । ଡିରେକ୍ଟର କହୁଥିଲେ, ସେଇଟା

କୁଆଡେ ମୋଟେ ଜମୁନ । (ପୁଷ୍ପା ଓଲଟାଇ) ଏଇ, ମିଳଗଲା । (ପଢ଼ି ଲ—) ସପ୍ତମ ଦୃଶ୍ୟ । ଗ୍ରନ୍ଥ ଉପରର ବାଲ୍‌କୋନ । ପରିବେଶଟା ଥମ୍ ଥମ୍ । ମଝିରେ ଠିଆ-ହୋଇଛି ସୁତପା, ତାକୁ ଘେରି ସଙ୍ଗୀତ, ଦୀପଙ୍କର ଆଉ ଅରୂପ

(ସେମାନେ ବନ୍ଦନାକୁ ଘୃଣା କରିବା ଢଙ୍ଗରେ, ଘୃଣା-ପାଖରେ)

ସୁରଂଜନ (ସଙ୍ଗୀତ) ।। ତମେ ମତେ ଠକିଚ ।

ବନ୍ଦନା (ସୁତପା) ।। ନା, ମୁଁ ଠକିନାହିଁ । ସମସ୍ତ ଆସିଲେ ମୁଁ...

ସୁରଂଜନ (ସଙ୍ଗୀତ) ।। ତମେ ସ୍ୱା'ର ପରିଣାମ ଭୋଗ କରିବ ।

କୁମୁଦ (ଦୀପଙ୍କର) ।। ମତେ ବି ଠକିଚ ।

ବନ୍ଦନା (ସୁତପା) ।।ମତେ ଝିଙ୍କିଏ ସମସ୍ତ ଦୋଷ ।

କୁମୁଦ (ଦୀପଙ୍କର) ।। ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ମୁଁ ତମକୁ ଅପେକ୍ଷା କରିଥିବି ।

ସଂଜୟ (ଅରୂପ) ।। ତମେ ଆମମାନଙ୍କୁ ନେଇ ମାଙ୍କଡ଼ ନଚେଇଚ । କ'ଣ ଦରକାର ଥିଲା, ଏ ସବୁର ?

ବନ୍ଦନା (ସୁତପା) ।। ଅରୂପ ! ତମେ ମତେ ବୁଝିବାକୁ ଚେଷ୍ଟା କର ।

ସଂଜୟ (ଅରୂପ) ।। କିଏ କାହାକୁ ବୁଝେ, ସୁତପା ? ତମେ ଅପେକ୍ଷା କରିବ ବୋଲି କୁହ; କିନ୍ତୁ ଅପେକ୍ଷା କରନା । ତମେ ମତେ ସ୍ୱପ୍ନ ଦେଖ ବୋଲି କୁହ ; କିନ୍ତୁ ଭୁଲିବାକୁ ଚେଷ୍ଟାକର ।

ବନ୍ଦନା (ସୁତପା) ।। ମିଛ କଥା ।

ସଂଜୟ (ଅରୂପ) ।। ମିଛ କଥା ? ସେ ଦିନ ପିକ୍‌ନିକ୍ ଯିବ ବୋଲି କହିଥିଲ, ଦେହ ଖରାପର ଛଳନା କରି ଗଲନି । ରବିବାର ଦିନ ସିନେମା ଯିବାକୁ କହି ବାନ୍ଧବୀ ଘରକୁ ଗ୍ଲଲିଗଲ ।

ସୁତପା (ବନ୍ଦନା) ।। ମୁଁ ବୁଝିପାରୁନି, ଚବିଶ ଘଣ୍ଟା ଆଗରୁ ମଣିଷ ଯୋଉ କଥା ଚିନ୍ତା କରୁଚି, ଚବିଶ ଘଣ୍ଟା ପରେ ସେ ସମସ୍ତ ରହିପାରୁନି କାହିଁକି ?

ସଂଜୟ (ଅରୂପ) ।। ନେତାଙ୍କ କଥା ନୁହେଁ । ଏଇଟା ଭ୍ରମ କଥା ।

ସୁତପା (ବନ୍ଦନା) ।। ନା, ସମସ୍ତଙ୍କ କଥା । କାଲି ଠିକ୍ ଏତିକବେଳେ ଆମେ କ'ଣ ଏଠି ଏକାଠି ହେବୁ ବୋଲି ଠିକ୍ କରିଥିଲେ ?

କାଲି ଏତିକି ବେଳେ ଆମେ କୋଉଠି ଥିଲେ ? କାଲିଟା ମୋଟେ ଥିଲା କି ନାହିଁ ?

ସଂଜୟ (ଅରୂପ) ॥ ସବୁ ଠିକ୍ ଥିଲା, କାଲି ଏତିକିବେଳେ । ମୁଁ ଅଫିସରୁ ଫେରିଲି । ସ୍କୁଲ୍‌ରୁ ଫେରିଆସି ତମେ ଛକରେ ଠିଆ ହୋଇଥିଲ । ଆମେ ଟାଉନ୍-ବସ୍‌କୁ ଅପେକ୍ଷା କଲୁଁ । ଟାଉନ୍-ବସ୍ ଆସିଲା । ଆମେ ଦି'ଜଣ ଗଲୁଁ ।

ବନ୍ଦନା ॥ କିନ୍ତୁ କିଛି ପ୍ରତିଶ୍ରୁତି ନ ଥିଲା ।

ସଂଜୟ ॥ କିଛି ପ୍ରତିଶ୍ରୁତି ନ ଥିଲା, ବନ୍ଦନା !

ବନ୍ଦନା ॥ କିଛି କଥା ନ ଥିଲା, କାଲି ଠିକ୍ ଏତିକିବେଳେ ।

ସଂଜୟ ॥ ହଁ, ଥିଲା ! ଅନେକ କଥା ଥିଲା, ବନ୍ଦନା ! ଅଥଚ ତମେ ସବୁ ମୋ ପାଖରେ ଲୁଚେଇଛ ।

ବନ୍ଦନା ॥ କ'ଣ ଲୁଚେଇଛି ?

ସଂଜୟ ॥ ଅନେକ କଥା—

ବନ୍ଦନା ॥ କୋଉ କଥା ?

ସଂଜୟ ॥ ଯେମିତି ତମ ବାହାଘର ।

ବନ୍ଦନା ॥ ବିଶ୍ୱାସ କର···

ସଂଜୟ ॥ ବିଶ୍ୱାସ ? ସବୁ ଶୁଣି ସାରିଲା ପରେ ? ତମେ, ତମ ଭାଇ, ତମ ଭାଉଜ—ସମସ୍ତେ ମିଶି ମୋ ସାଙ୍ଗରେ ଖେଳିଛ ।

ବନ୍ଦନା ॥ ନା ।

ସଂଜୟ ॥ ପୁଣି ମିଛ ? ପୁଣି ସେଇ ପ୍ରତାରଣା ? ପୁଣି ଡ଼ବଲ୍ ଗେମ୍ ?

ବନ୍ଦନା ॥ ମୁଁ ତ କିଛି ପ୍ରତିଶ୍ରୁତି ଦେଇନି ।

ସଂଜୟ ॥ ତମ କଥାରେ, ତମ ବ୍ୟବହାରରେ, ତମ ପ୍ରେମରେ କିଛି ପ୍ରତିଶ୍ରୁତି ନ ଥିଲା ?

ବନ୍ଦନା ॥ ଯଦି ସେଇଟା ପ୍ରତିଶ୍ରୁତି ହୁଏ, ମୁଁ ପ୍ରତିଶ୍ରୁତି ଭଙ୍ଗ କରି-ନାହିଁ

ସଂଜୟ ॥ ଭଙ୍ଗ କରିନାହଁ ? ତା' ହେଲେ କାଲି ସନ୍ଧ୍ୟାର ଘଟଣା ?

ବନ୍ଦନା ॥ ଆସିଛୁ ।

(ସ୍ମାରକ ସେତେବେଳକୁ ଆଶ୍ଚର୍ଯ୍ୟ ହୋଇ ବହିରୁ ମୁହଁ ଉଠେଇ ଏମାନଙ୍କୁ ଦେଖୁଛି ।)

ସ୍ମାରକ ॥ ଘଟଣା କ'ଣ ? ଏସବୁ ତ କାହିଁ ବହିରେ କୋଉଠି ନାହିଁ ।

ମନ ।। ସନ୍ତ୍ରସ୍ତ ନା ଅରୂପ ? ନାଟକର ନାୟକ, ନା ନାୟକର ନାଟକ ?

ସୁରଞ୍ଜନ ।। ମତେ ବାଧ୍ୟ କରାଗଲା ସଇତାଣ ହବା ପାଇଁ । ମୁଁ କୁଆଡେ଼ ଗୋଟାଏ ଦୁଷ୍ଟ ଚରିତ୍ର !

କୁମୁଦ ।। ସମସ୍ତ ତ ଏକ ଦୁଷ୍ଟ ପଳାତକ । ମୁଁ କୁଆଡେ଼ ଧୀଯଙ୍କର । ମୋ ପାଇଁ ଅନେକ ଲେଖା ଲେଖା ସଂଳାପ । ନାଟକରେ ମୁଁ ଜଣେ କବି, ବେଳେ ବେଳେ ଦାର୍ଶନିକ । ମୁଁ ବେଳେ ବେଳେ କହିବି—"ଜୀବନ ଏକ କାରୁଣ୍ୟ, ବୁଡି ଯାଉଥିବା ଡ଼ଙ୍ଗା ।

ସ୍ମାରକ ।। ସେଟା ଅନେକ ପରେ । ନାଟକ ପ୍ରାୟ ଶେଷ ହେଲା ବେଳକୁ ।

କୁମୁଦ ।। ମୋର ସବୁଠୁ ଇମ୍ପୋର୍ଟାଣ୍ଟ ଡାଇଲଗ୍ ହେଲା—"ସୁତପା ! ଆମେ ସମସ୍ତେ ଜଣେ ଜଣେ ଧାରାବାହିକ ମନୋଟୋନ ।" ଆମର ସର୍ବଶେଷ ଦୃଶ୍ୟ ହେଲା—ବିଛଣାରେ ଶୋଇଛି ମୋର ଶବ, ନୀରବ, ନିଷ୍ପନ୍ଦ । ମୁଣ୍ଡ ପାଖରେ ରୋଦନରତା ଗୃହିଣୀ, ପାଖରେ ଏବଂ ଗୋଡ଼ ପାଖରେ ଅପାତତଃ ବିଷର୍ଣ୍ଣ ପୁତ୍ର, ପୁତ୍ରବଧୂ, କନ୍ୟା ଓ ଜାମାତାଗଣ । ଏଇମିତି ଏକ ବିଷାଦ ଯୋଗରେ ସବୁ ଶେଷ । ସବୁର ପୂର୍ଣ୍ଣଚ୍ଛେଦ ।

ସ୍ମାରକ ।। ଆହୁରି ବାକି ରହିଗଲା । ମଝିରୁ ଛୁଡ଼ିଗଲେ ।

ସୁରଞ୍ଜନ ।। ମୋତେ ନିର୍ଦ୍ଦେଶ ଦିଆଯାଇଛି, କୌଣସି ଏକ ଦୃଶ୍ୟରେ, ମୁଁ ମଞ୍ଚର ବାଁ ପାଖ କୋଣରେ ଠିଆ ହେବି । ପ୍ରେମିକ ପ୍ରେମିକା ମଞ୍ଚ ପଛରେ, ମଝିରେ । ହରବିଳାସ ଏବଂ ଚନ୍ଦ୍ରାଦେବୀ ଡ଼ାହାଣ ପାଖ କୋଣରେ । ମୋର ସେଠି ଗୋଟାଏ ଲମ୍ବା ହସ ସହ, "ମୋତେ ନିଷ୍ଠୁର କହିପାର, ହୃଦୟହୀନ କହିପାର—

ସ୍ମାରକ ।। ଶୁଣନ୍ତୁ, ବର୍ତ୍ତମାନ ଦ୍ୱିତୀୟ ଅଙ୍କ, ଚତୁର୍ଥ ଦୃଶ୍ୟ ।

ସଇତାଣ (ସୁରଞ୍ଜନ) ।। କିନ୍ତୁ, ମୁଁ ଯାହା କହେଁ, ସେଇଟା ଆଦାୟ କରି ଛାଡ଼େଁ । ମୁଁ ପ୍ରେମ ଫ୍ରେମକୁ···

ସ୍ମାରକ ।। ପ୍ରେମ ନୁହେଁ, ଭଲ ପାଇବା ।

ସୁରଞ୍ଜନ (ସଇତାଣ) ।। ଭଲ ପାଇବାକୁ ଅସ୍ୱୀକାର କରେଁ । ମୁଁ ସୁତପାକୁ ଅରୂପ ପାଖରୁ ଜୋର କରି ଛଡ଼ାଇ ନେବି । ମୋର କେହି କିଛି କରି ପାରିବେ ନାହିଁ ।

କୁମୁଦ (ଦୀପଙ୍କର) ।। ତୁମେ ସୁତପାକୁ ମୁକ୍ତ ଦିଅ, ସତ୍ତାଣ !
ସୁରଞ୍ଜନ (ସତ୍ତାଣ) ।। କାହିଁକି ?
କୁମୁଦ (ଦୀପଙ୍କର) ।। କାରଣ, ସେ ତୁମକୁ ଚାହେଁନି ।
ସୁରଞ୍ଜନ (ସତ୍ତାଣ) ।। କାହିଁକି ଚାହେଁନି ?
କୁମୁଦ (ଦୀପଙ୍କର) ।। ମୁଁ ବି ସୁତପାକୁ ଦିନେ ଇଚ୍ଛା କରିଥିଲି ।
ସୁରଞ୍ଜନ (ସତ୍ତାଣ) ।। ଛାଡ଼ିଦେଲି ?
କୁମୁଦ (ଦୀପଙ୍କର) ।। ଛାଡ଼ିଦେଲି । ତା'ର ଯିଏ ଦରକାର, ସିଏ ମୁଁ ନୁହେଁ, ଅରୂପ ।
ସୁରଞ୍ଜନ ।। ରାସ୍ତାରେ ଆସିଲାବେଳେ ତୁମେ କିନ୍ତୁ, ଅନ୍ୟ କଥା କହୁଥିଲ ?
କୁମୁଦ ।। କ'ଣ ?
ସୁରଞ୍ଜନ ।। ସୁତପାକୁ ପାଇଲେ ତା' ତଣ୍ଟି ଚିପି ଧରିବ ।
କୁମୁଦ ।। କୋଉଦିନ ?
ସୁରଞ୍ଜନ ।। ଆଜି, ରାସ୍ତାରେ, ଯାଇଁ ହେଇ ରିହର୍ସାଲ୍‌କୁ ଆସୁଥିଲ ବେଳେ ।
କୁମୁଦ ।। ହଁ, କହୁଥିଲି, କିନ୍ତୁ ସୁତପାକୁ ନୁହେଁ, ବନ୍ଦନାକୁ ।
ବନ୍ଦନା ।। ମୋତେ ?
କୁମୁଦ ।। କାରଣ, ତମେ ମୋତେ ଘୃଣା କର । ସେଦିନ ରିହର୍ସାଲ୍ ପରେ ସୁରଭିକୁ କହୁଥିଲ, ମୁଁ କୁଆଡ଼େ ଅସଭ୍ୟ, କୁତ୍ସିତ ।
ସ୍ମାରକ ।। ଏଇଏ ତ ବହିରେ ନାହିଁ ।
ସୁରଞ୍ଜନ ।। ଓଃ, ଡ୍ୟାମ୍ ୟୋ'ର ବୁକ୍ ।
ସ୍ମାରକ ।। ଲେଖା ବାହାରେ—
ମନ ।। କ'ଣ ହଉଚି ଇଏ ? ଆପଣମାନେ 'ରିହର୍ସାଲ ଦେବାକୁ ଆସିଚନ୍ତି— ନା ନିଜ ନିଜ କଥା କହିବାକୁ ଆସିଚନ୍ତି !
ବନ୍ଦନା ।। ସେ ଭଦ୍ରଲୋକ କୁଆଡ଼େ ମୋ' ତଣ୍ଟି ଚିପି ଧରିବେ, କାହିଁକି ?
ମନ ।। ମୁଁ ଦେଖୁଚି, ଅଜି ସମସ୍ତେ ଚରିତ୍ରର ସଂଳାପ ଛାଡ଼ି ନିଜ ନିଜ କଥା କହିବାକୁ ଆରମ୍ଭ କରିଛନ୍ତି ।
ସୁରଭି ।। (ବନ୍ଦନା ପାଖକୁ ଯାଇ) ଏଇଟା ରିହର୍ସାଲ୍ ରୁମ୍ । ପିଲାଙ୍କ ଭଳିଆ ଏମିତି କ'ଣ ହଉଚି ?
ବନ୍ଦନା ।। ତମେ ତ ସବୁ ଶୁଣିଚ !
ମନ ।। ମନେ ରଖନ୍ତୁ, ଆପଣମାନେ ଅଭିନୟ କରିବେ, ଆଉ କେଇଟା ଦିନ ପରେ ନାଟକ ମଞ୍ଚସ୍ଥ ହବ; ଅଥଚ କେହି

ଜଣେ ହେଲେ ଠିକ୍ ଭାବରେ ବହିର ସଂଳାପ କହିପାରୁ ନାହାନ୍ତି !

ସଞ୍ଜୟ ॥ ସମ୍ଭବ ହେଲନି ।

ମନ ॥ କାହିଁକି ସମ୍ଭବ ହେଲନି ?

ସଞ୍ଜୟ ॥ ଯୋଉ ମୁହୂର୍ତ୍ତରେ ବହିର ଚରିତ୍ର ସାଙ୍ଗରେ ଆଇଡେଣ୍ଟି-ଫାଏଡ୍ ହେଇଗଲୁଁ, ଆପଣା ଛାଏଁ ନିଜକଥା ବାହାରି-ପଡ଼ିଲା ।

ମନ ॥ ଏଇଟା ଖାଲି ଆପଣଙ୍କ କଥା, ନା ସମସ୍ତଙ୍କ କଥା ?

ସଞ୍ଜୟ ॥ ବୋଧହୁଏ, ସମସ୍ତଙ୍କ କଥା ।

ମନ ॥ ସେମିତି ହବନି, ବହିର ସଂଳାପ ଆପଣମାନଙ୍କୁ କହିବାକୁ ପଡ଼ିବ ।

କୁମୁଦ ॥ ତା'ମାନେ ?

ମନ ॥ ଆପଣମାନେ ଅଭିନେତା । ଆପଣ ଗୋଟିଏ ନାଟକ ମଞ୍ଚସ୍ଥ କରିବାକୁ ଯାଇଛନ୍ତି, ତେଣୁ ଆପଣଙ୍କର ନିଜ କଥା କହିବାର କୌଣସି ଅବକାଶ ନାହିଁ ।

ସୁରଞ୍ଜନ ॥ ଆମର କ'ଣ ଭୁଲ୍ ହେଇଯାଇଚି ?

କୁମୁଦ ॥ ଭୁଲ୍‌ରେ ଆମ ମୁହଁରୁ ନିଜ କଥା ବାହାରି ପଡ଼ିଚି ?

ସୁରଞ୍ଜନ ॥ କିନ୍ତୁ, ଏଇଟା କ'ଣ ସ୍ୱାଭାବିକ ନୁହେଁ ?

ନନ୍ଦନା ॥ ନିଜକୁ ଆମେ କାହିଁକି......କ'ଣ କରିଯାଇପାରେ ?

ମନ ॥ ଆଜି ଆପଣମାନଙ୍କର କ'ଣ ହେଇଚି, କହିଲେ ?

ସଂଜୟ ॥ କିଛି ଗୋଟାଏ ହେଇଚି । ଠିକ୍ କ'ଣ ହେଇଚି, ମୁଁ କହି-ପାରିବି ନାହିଁ ।

ସ୍ମାରକ ॥ ତା'ହେଲେ ରିହର୍ସାଲ କ'ଣ ବନ୍ଦ କରିଦବା ?

ମନ ॥ ନା, ଡିରେକ୍ଟରଙ୍କର ଆଦେଶ ନାହିଁ । ଆଜି କେତେଗୁଡ଼ାଏ ବଡ଼ ବଡ଼ ସିକୁଏନ୍ସ କରିବାକୁ ସେ ମୋତେ କହି-ଯାଇଛନ୍ତି । ସେଇ କଥା କହିବାକୁ ସେ ମୋତେ ଫୋନ୍‌ରେ ଡାକିଥିଲେ । ତାଙ୍କର ଆସୁ ଆସୁ ଡେରି ହବ ।

ଦୀନ ॥ ତା'ହେଲେ କହନ୍ତୁ ।

ମନ ॥ (ସ୍ମାରକକୁ) ଦ୍ୱିତୀୟ ଅଙ୍କ, ପ୍ରଥମ ଦୃଶ୍ୟ ।

ସ୍ମାରକ ॥ (ବହି ଓଲଟାଇ ବାହାର କଲେ)

ମନ ।। ସିଚୁଏସନଟା ପଢ଼ି ଶୁଣେଇ ଦିଅନ୍ତୁ ।

Is everybody ready ?

ଧନ ।। ରେଡ଼ି ।

ସ୍ମାରକ ।। ସେ ଦିନ ସନ୍ଧ୍ୟା । ହରବିଳାସ ବାବୁଙ୍କ ଘର । ଚନ୍ଦ୍ରାଦେବୀ, ହରବିଳାସ ବାବୁଙ୍କ ସ୍ତ୍ରୀ, ଉତ୍କଣ୍ଠିତା । ସେ ଯେମିତି କାହାକୁ ଅପେକ୍ଷା କରୁଚନ୍ତି । ଏଇ ସମୟରେ ସ୍କୁଲରୁ ଫେରିଲେ ସୁତପା—କ୍ଲାନ୍ତ, ବିରକ୍ତ ।

ବନ୍ଦନା (ସୁତପା) ।। ଖବର, ଶୁଣିଲଣି ?

ସୁରଭି (ଚନ୍ଦ୍ରା) ।। କ'ଣ ?

ବନ୍ଦନା (ସୁତପା) ।। ଝିଅ କୁଆଡ଼େ ରେଜିଗ୍ନେସନ୍ ଫେରେଇ ଆଣିଲେ !

ସୁରଭି (ଚନ୍ଦ୍ରା) ।। ନ ଆଣିଥିଲେ ବୋକାମି କରିଥା'ନ୍ତେ ।

ବନ୍ଦନା (ସୁତପା) ।। ତା'ହେଲେ ପ୍ରସ୍ତାବଟା ତୁମ ଆଡ଼ୁ ?

ସୁରଭି (ଚନ୍ଦ୍ରା) ।। ମୁଁ ତମ ବା ତମ ଝିଅଙ୍କ ଭଳି ବୋକା ନୁହେଁ ।

ବନ୍ଦନା (ସୁତପା) ।। କାହିଁକି ?

ସୁରଭି (ଚନ୍ଦ୍ରା) ।। ପ୍ରତିଶ୍ରୁତିଟା କ'ଣ ଜାଣିଚ ?

ବନ୍ଦନା (ସୁତପା) ।। କ'ଣ ?

ସୁରଭି (ଚନ୍ଦ୍ରା) ।। ଏମିତି କିଛି ଗୋଟାଏ, ବଡ଼ ଧରଣର ପୋଷ୍ଟ—

ବନ୍ଦନା (ସୁତପା) ।। ମନ୍ତ୍ରିତ୍ୱ ?

ସୁରଭି (ଚନ୍ଦ୍ରା) ।। ହୋଇପାରେ ।

ବନ୍ଦନା (ସୁତପା) ।। ମୋର ବନ୍ଧୁ ବାନ୍ଧବ, ଚିହ୍ନା ପରିଚିତ, ମୋତେ ଦେଖେଇ ଶୁଣେଇ ବହୁତ କଥା କହୁଛନ୍ତି ।

ସୁରଭି (ଚନ୍ଦ୍ରା) ।। ଫେମିଲିର ଡେଫିନେସନ୍ ଜାଣିଚ ?

ବନ୍ଦନା (ସୁତପା) ।। କ'ଣ ?

ସୁରଭି (ଚନ୍ଦ୍ରା) ।। ସ୍ୱାମୀ, ସ୍ତ୍ରୀ ଓ ସେମାନଙ୍କର ସନ୍ତାନମାନେ ।

ବନ୍ଦନା (ସୁତପା) ।। ମୁଁ କେହି ନୁହେଁ ?

ସୁରଭି (ଚନ୍ଦ୍ରା) ।। ମୁଁ ଫ୍ୟାମିଲିର ଡେଫିନେସନ୍ କହିଲି ।

ବନ୍ଦନା (ସୁତପା) ।। ତା'ହେଲେ, ମୁଁ ଏ ଘରର କିଏ ?

ସୁରଭି ।। ଗୋଟାଏ ନିର୍ଦ୍ଦିଷ୍ଟ ବୟସ ପାରି ହୋଇଗଲେ, ଝିଅମାନଙ୍କୁ ପରିବାରର ବୋଝ ବୁଝାଯାଏ ।

ବନ୍ଦନା ।। ମୁଁ ତୁମମାନଙ୍କର ବୋଝ ? ସେଥିପାଇଁ କ'ଣ ମୁଁ ଦାୟୀ ?

ସୁରଭି ।। ଚେଷ୍ଟା କଲେ ତୁମେ ବୋଝଟା ହାଲୁକା କରିପାରନ୍ତେ ।

ବନ୍ଦନା || ମୁଁ ଚେଷ୍ଟା କଲେ ?

ସୁରଭି || ତୁମର ଅନେକ ଚିନ୍ତା । ଯେମିତି ଅରୂପ, ଦର୍ପଣ, ସ୍ୱପଙ୍କର ।

ବନ୍ଦନା || ସେମାନେ—ସେମାନେ—

ସୁରଭି || ଆମର ନବାଙ୍କ ଦ୍ୱାଲୁକା କବ୍ୟପାରନ୍ତେ ।

ବନ୍ଦନା || ମୁଁ ସେମାନଙ୍କୁ ଘୃଣା କରେ ।

ସୁରଭି || ଅଥଚ, ଦେଖାହେଲେ ଓଠ ବିସ୍ତାରିତ ହୁଏ । ହସର ଶେଷଟା ମନେ ହୁଏ, ଯେମିତି କଳ କଳ ଝରଣା ।

ବନ୍ଦନା || ତମେ ମୋତେ ସନ୍ଦେହ କର ?

ସୁରଭି || ସନ୍ଦେହ କରୁଥିଲେ, ସେମାନଙ୍କ ଆସିବା କେବେଠାରୁ ବନ୍ଦ ହୋଇ ସାରନ୍ତାଣି । ମୁଁ ସ୍ତ୍ରୀହେଁ, ଗୋଟାଏ କିଛି ନିଶ୍ଚିତ ପଣଦେ । ଆଉ ସେଇଟା ସେମାନଙ୍କ ପାଖରେ ହିଁ ସମ୍ଭବ ।

ବନ୍ଦନା || ତମ ମନ କଥା ଜାଣି ଖୁସି ହେଲ ।

ସୁରଭି || ଏତେଦିନ ପରେ ମୁଁ ବି ଜଣେଙ୍କୁ ଦେଇ ପାରିଥିବାରୁ ଆପାତତଃ ନିଶ୍ଚିନ୍ତ ।

ବନ୍ଦନା || ମୋଟ କଥା, ତମର ମୋ ପ୍ରତି ଈର୍ଷା ଅଛି ? ଈର୍ଷାରେ ତମେ ଜଳିଯାଉଚ ।

ସୁରଭି || ଈର୍ଷା କାହିଁକି କରିବି, ବନ୍ଦନା ?

ବନ୍ଦନା || କୁମୁଦକୁ କୋଉଦିନ କହିଥିଲ—ଅସଭ୍ୟ, କୁତ୍ସିତ ?

ସୁରଭି || କ'ଣ ହେଲା, ସେଇଠୁ ? କହିଥିଲି ତ ।

ବନ୍ଦନା || ପ୍ରକାରାନ୍ତରେ ତମେ ଶୁଣିଥିଲ ସେ ମୋତେ ଘୃଣା କରୁ ।

ସୁରଭି || କାହିଁକି, ମୋର ଅନ୍ୟ କେହି ନାହାଁନ୍ତି ?

ବନ୍ଦନା || ମୋର ବି ଅନ୍ୟଲୋକ ଅଛନ୍ତି । ତା'ହେଲେ କୁମୁଦ କାହିଁକି ?

ସୁରଭି || କିଏ ? ସନ୍ତୋଷ ନା ସୁରଞ୍ଜନ ?

ବନ୍ଦନା || ତମର ଜାଣିବା ଦରକାର ନାହିଁ ।

ମନ || ବନ୍ଦ କରନ୍ତୁ ! ବନ୍ଦ କରନ୍ତୁ ।
(ସେମାନେ ଅଟକି ଗଲେ ।)
ଆପଣମାନେ ମୋତେ ପ୍ରତିଶ୍ରୁତି ଦେଇଥିଲେ, ଆଉ ଜଣ କଥା କହିବେ ନାହିଁ । (ବନ୍ଦନାକୁ) ଆପଣଙ୍କ ସଂଳାପ

ଶେଷ ହୋଇଛି, ଏଥର ଘଣ୍ଟିକୁ ଫେରଯା'ନ୍ତୁ । ଦୀନବନ୍ଧୁ ବାବୁ ! ଆସନ୍ତୁ । ଠିକ୍ ଏତିକିବେଳେ ଆପଣ ପଶିଆସିବେ, କଥା ଅଧା ରଖି ଚନ୍ଦନା ଫେରିଯିବ ତା' ରୁମ୍‌କୁ । (ଦୀନବନ୍ଧୁ ବାବୁ ଆସିଲେ) ସୁରଭି ! ଆରମ୍ଭ କର ।

ସୁରଭି (ଚନ୍ଦ୍ରା) ॥ ଆସିଲେ ?

ଦୀନ (ହରିବିଲାସ) ॥ ହଁ, ଆସିଲି ।

ସୁରଭି (ଚନ୍ଦ୍ରା) ॥ ରେଜିଗ୍‌ନେସନ୍ ଚିଠିଟା ?

ଦୀନ (ହରି) ॥ ଫେରେଇ ଆଣିଛି ।

ସୁରଭି (ଚନ୍ଦ୍ରା) ॥ କିଛି ଅସୁବିଧା ହୋଇନି ତ ?

ଦୀନ (ହରି) ॥ ନା, ମୋର କଥାଟି ଶୁଣି ଖୁବ୍ ଖୁସି ହୋଇଗଲେ ମୁଖ୍ୟମନ୍ତ୍ରୀ ।

ସୁରଭି (ଚନ୍ଦ୍ରା) ॥ ହେବେ ନାହିଁ ? ମନ୍ତ୍ରିମଣ୍ଡଳଟା ଭାଙ୍ଗି ଯାଇଥାନ୍ତା, ବଞ୍ଚିଗଲେ ।

ଦୀନ (ହରି) ॥ ବାହାରେ ମୋର କେତେଜଣ ବନ୍ଧୁ, ମୋର ଛୁ ଛୁକର କରୁଥିଲେ ।

ସୁରଭି (ଚନ୍ଦ୍ରା) ॥ ଘର ଭିତରେ ବି କରୁଚନ୍ତି ।

ଦୀନ (ହରି) ॥ କିଏ ?

ସୁରଭି (ଚନ୍ଦ୍ରା) ॥ କିଏ ଆଉ ହବ । ତମ ଭଉଣୀ ସୁନେମଣି ।

ଦୀନ (ହରି) ॥ କ'ଣ କହୁଥିଲା ?

ସୁରଭି (ଚନ୍ଦ୍ରା) ॥ ଯାହା ତୁମର ବନ୍ଧୁମାନେ କହୁଥିବେ ।

ଦୀନ (ହରି) ॥ ଫେରେଇ ଆଣିବା କ'ଣ ଭୁଲ ହେଲା ?

ସୁରଭି (ଚନ୍ଦ୍ରା) ॥ କହୁ କିଏ କହିବ । ଏମାନେ ତ ତୁମର ଭବିଷ୍ୟତ ଗଢ଼ି-ଦେବେ ନାହିଁ ? ଠିକ୍ କଥା, ମୁଖ୍ୟମନ୍ତ୍ରୀ ଯେ ପ୍ରତିଶ୍ରୁତି ଦେଇଥିଲେ ?

ଦୀନ (ହରି) ॥ ପାଳନ କରିବେ ।

ସୁରଭି (ଚନ୍ଦ୍ରା) ॥ ତା'ମାନେ ମନ୍ତ୍ରିତ୍ୱ ?

ଦୀନ (ହରି) ॥ ପରଦିନ ଶପଥ ନେବ ।

ସୁରଭି (ଚନ୍ଦ୍ରା) ॥ (ସ୍ୱସ୍ତିର ନିଃଶ୍ୱାସ ମାରି) ଆଃ !

ଦୀନ (ହରି) ॥ ମୁଁ କହୁ, ରେଜିଗ୍‌ନେସନ୍ ଫେରାଇ ଆଣିବା ପୂର୍ବରୁ ଅନ୍ୟ କଥା ଭାବୁଥିଲି ।

ସୁରଭି (ଚନ୍ଦ୍ରା) ॥ କ'ଣ ?

ଧୀନ (ସ୍ୱଗତ) || ଆଉ ଥରେ ଚେଷ୍ଟା କରି ଦେଖିବ । ମୁଖ୍ୟମନ୍ତ୍ରୀଙ୍କୁ ମୋ ଲୋକପ୍ରିୟତା ଦେଖେଇ ଦେବ ।

ସୁରଭି (ଚନ୍ଦ୍ରା) || ଆଉ ଥରେ ?

ଧୀନ (ସ୍ୱଗତ) || ହଁ, ଆଉ ଥରେ ।

ସୁରଭି (ଚନ୍ଦ୍ରା) || ଭାବିକି ?

ଧୀନ || ତମେ କ'ଣ ଭାବୁଚ, ସୁରଭି ! ମୁଁ ଆଉଥରେ ଲଢ଼ି ଏମାନଙ୍କୁ ମୋ କୃତତ୍ୱତା ଦେଖାଏଁ ?

ସୁରଭି || ମୁଁ ସବୁ ଏଠି ଥା'ନ୍ତି, ଏମିତ ଠିକ୍ ଭାବିଥାନ୍ତି । ତୁମକୁ କେବେ ରେଜିଗ୍‌ନେସନ୍ ଫେରେଇ ଆଣିବାକୁ କହନ୍ତ ନାହିଁ ।

ଧୀନ || ମୁଁ ସବୁ ସତରେ ହତବଳାସ ହେଇଥାନ୍ତି, ମୁଁ କଦାପି ଫେରେଇ ଆଣି ନ ଥାନ୍ତି ।

ସୁରଭି || ସବୁ ସତକୁ ସତ, ସେଇଆ କରିଥା'ନ୍ତି, ମୁଁ କେବେ ତୁମକୁ ଘରେ ପୁରେଇ ନ ଥାନ୍ତି ।

ଧୀନ || ମୁଁ କରିପାରି ନ ଥାନ୍ତି । ବିଶ୍ୱାସ କର, ନୁଏ ତ ମୁଁ ଅତ୍ମ-ହତ୍ୟା କରିଥା'ନ୍ତି । ସେଇଥିପାଇଁ ମୁଁ ରାଜନୀତି ନାମକ ଟାଇଟଗ୍ ଛାଡ଼ିପାରିଲି ନାହିଁ ।

ମନ || (ଖୁବ୍ ବିରକ୍ତ ହୋଇ)—ବନ୍ଦ କରନ୍ତୁ । ବନ୍ଦ କରନ୍ତୁ ଭଦ୍ରଚ । ଇଏ କ'ଣ ହଉଚ ? କ'ଣ ହେଇଚ ଆଜି, ଆପଣମାନଙ୍କର ?

ସ୍ମାରକ || କେହି ଜଣେ ହେଲେ ବାହାର ସଂଳାପ କହୁନାହାନ୍ତି । ସେଇଥିପାଇଁ କହୁଚ, ଅଜି ବରଂ ଥାଉ ।

ମନ || ନା, ରିହର୍ସାଲ୍ ବନ୍ଦ ହୋଇପାରିବ ନାହିଁ, ସଂଜୟ ବାବୁ !

ସଂଜୟ || କୁହନ୍ତୁ !

ମନ || ଅପଣ କ'ଣ ଟାୟାର୍ଡ଼୍ ? ବିଶ୍ରାମ ଚାହାନ୍ତି ? ଚା' ଖାଇବାକୁ ଚାହାଁନ୍ତି ?

ସୁରେନ୍ଦ୍ରନ || If God will say, Let there be wind.

କୁମୁଦ || There will be wind.

ମନ || ଅଃ, ବନ୍ଦ କରନ୍ତୁ । ଚା' ଖାଇବେ ?

ସନ୍ତୋଷ || ନା, ଦରକାର ନାହିଁ ।

ମନ || ଅପଣଙ୍କର ସେଇ ସିକୁଏନ୍‌ସଟା କୁହନ୍ତୁ ତ ?

ସନ୍ତୋଷ ॥ କୋଉ ସିକୁଏନ୍ସ ?

ମନ ॥ ସେଇ ଯେ କନ୍ଦୁଢନ ପରେ କୌଣସି ଏକ ଶୈଳ-ନଦୀ-ସରେ ସୁତପା ସାଙ୍ଗରେ ଆପଣଙ୍କର ଦେଖା । ସୁତପା ବାନ୍ଧାହୋଇ ସାରିଚି । ଆଉ ଆପଣଙ୍କ ବୁକରୁ ବାକସ୍ଥ ଛୁଞ୍ଚିଦେଇ ଖାଲି ଘୂରି ବୁଲୁଛନ୍ତି, ଏଠୁ ସେଠିକି ।

ସ୍ମାରକ ॥ ଦ୍ୱିତୀୟ ଅଙ୍କ, ଅଷ୍ଟମ ଦୃଶ୍ୟ—

ମନ ॥ ସୁତପାକୁ ଦେଖି ଆପଣ ଚମକି ପଡ଼ିଲେ । ସୁତପା ଗୋଟାଏ ଗାର୍ଡେନ ଚେୟାର୍‌ରେ ବସିଚି । ମୁହଁରେ ତା'ର ପଡ଼ିଚି ସକାଳର ସୂର୍ଯ୍ୟ । ସେ ଶୂନ୍ୟ ଦୃଷ୍ଟିରେ ଦୂରକୁ ଅନେଇ ରହିଚି ।

ସନ୍ତୋଷ (ଅରୂପ) ॥ ସୁତପା !

ବନ୍ଦନା (ସୁତପା) ॥ ଅରୂପ, ତୁମେ ?

ସନ୍ତୋଷ (ଅରୂପ) ॥ କ'ଣ ଚେଞ୍ଜ୍‌ରେ ?

ବନ୍ଦନା (ସୁତପା) ॥ ହଁ, ଚେଞ୍ଜ୍‌ରେ ।

ସନ୍ତୋଷ (ଅରୂପ) ॥ ତମର ସ୍ୱାମୀ ?

ବନ୍ଦନା (ସୁତପା) ॥ ତୁମେ ତାଙ୍କୁ ଚିହ୍ନ, ଅରୂପ !

ସନ୍ତୋଷ (ଅରୂପ) ॥ କିଏ ?

ବନ୍ଦନା (ସୁତପା) ॥ ତମର ବନ୍ଧୁ, ସନ୍ତୋଷ ।

ସନ୍ତୋଷ (ଅରୂପ) ॥ ସନ୍ତୋଷ ?

ବନ୍ଦନା (ସୁତପା) ॥ ଗୋଟାଏ ମନ୍ତ୍ରୀର ଭଉଣୀ, ତମପରି ଜଣେ ସାଧାରଣ ଲୋକକୁ ବାହା ହବ ? ତମେ ମୋତେ କୋଠା ଦେଇ-ପାରିଥା'ନ୍ତା ? ଫ୍ରିଜ୍ ? ଗାଡ଼ି ? ପଚିଶ ଟଙ୍କିଆ ନଡ଼ପିନ୍ଧା ଶାଢ଼ୀ ?

ସନ୍ତୋଷ (ଅରୂପ) ॥ ନାଁ ।

ବନ୍ଦନା (ସୁତପା) ॥ ତେଣୁ, ସେ ଯାହା ଚାହୁଁଥିଲା, ଆଦାୟ କରି ଛାଡ଼ିଲା ।

ସନ୍ତୋଷ (ଅରୂପ) ॥ ତମେ ଖୁବ୍ ସୁଖୀ, ନା ?

ବନ୍ଦନା (ସୁତପା) ॥ ତମେ ମୋତେ ବଞ୍ଚାଅ, ଅରୂପ ! ମୁଁ ଶେଷ ହୋଇଯାଉଚି ।

ସନ୍ତୋଷ (ଅରୂପ) ॥ କାହିଁକି, ତମର ସ୍ୱାମୀ ?

ବନ୍ଦନା (ସୁତପା) ॥ ସେ ବର୍ତ୍ତମାନ କୋଉଠି ଥିବ, ଜାଣିଚ ?

ସନ୍ତୋଷ (ଅରୂପ) ॥ କୋଉଠି ?

ବନ୍ଦନା (ସୁତପା) ॥ କେତେଥର ମୁଁ ଏ ବାନ୍ଧବୀ ଗହଣରେ ପାହାଡ଼ର ଦୃଶ୍ୟ ଦେଖିଥିବ ।

ସଞ୍ଜୟ (ଅରୂପ) ॥ ତମେ ଏକା ?

ବନ୍ଦନା (ସୁତପା) ॥ ଏକା ।

ସଞ୍ଜୟ (ଅରୂପ) ॥ ତମେ ବଞ୍ଚିବାକୁ ଚାହଁ ?

ବନ୍ଦନା (ସୁତପା) ॥ ବଞ୍ଚିବାକୁ ଚାହେଁ ।

ସଞ୍ଜୟ (ଅରୂପ) ॥ ମୋତେ ବିଶ୍ୱାସ କର !

ବନ୍ଦନା (ସୁତପା) ॥ ବିଶ୍ୱାସ କରେ ।

ସଞ୍ଜୟ (ଅରୂପ) ॥ ଭଲ ପାଅ ? ଏବେ ବି ?

ବନ୍ଦନା (ସୁତପା) ॥ ଭଲ ପାଏ । ସ୍ୱପ୍ନ ଦେଖେ, ଏବେ ବି ।

ସଂଜୟ (ଅରୂପ) ॥ ଆଜି ରାତିରେ ତମେ ତାକୁ ଛାଡ଼ି ମୋ ପାଖକୁ ଚାଲିଆସି-ପାରିବ ?

ବନ୍ଦନା (ସୁତପା) ॥ ଅରୂପ !

ସଞ୍ଜୟ (ଅରୂପ) ॥ ନ ହେଲେ, ସେ ତୁମକୁ କେବେ ମୁକ୍ତି ଦେବ ନାହିଁ । ସେ ଗୋଟାଏ ଜୋକ ।

ବନ୍ଦନା (ସୁତପା) ॥ ମୁଁ ଜାଣେ ।

ସଂଜୟ (ଅରୂପ) ॥ ଗାଡ଼ି, ଶାଢ଼ୀ, ଫ୍ରିଜ୍ ଓ କୋଠାର ମୋହ ଛାଡ଼ି ମୋ' ପାଖକୁ ଚାଲିଆସି ପାରିବ ?

ବନ୍ଦନା ॥ ପାରିବି, ପାରିବି । ନ ହେଲେ, ସେ ମୋତେ ଛାଡ଼ିବ ନାହିଁ । ତମେ ଠିକ୍ କହୁଚ—ସେ ଗୋଟାଏ ଜୋକ । ବାରମ୍ବାର ମୋତେ ସେ—ଇସ୍, ମୁଁ ତୁମକୁ କହିପାରିବି ନାହିଁ । ଛୋଟ ଗୋଟାଏ ଭୁଲ୍ ପାଇଁ ସେ ମୋର ଚରିତ୍ର, ପ୍ରେମ, ବିଶ୍ୱାସ ସବୁକୁ ଶେଷ କରି ଦଉଚି ।

ସଂଜୟ ॥ ମୁଁ ଜାଣେ, ସେଇଥି ପାଇଁ ତମ ପ୍ରତି ମୋ'ର ଏତେ ମମତା ।

ବନ୍ଦନା ॥ ଜାଣ, ସେ ସତୀଶ ନୁହେଁ, ସୁରଞ୍ଜନ ।

ସଂଜୟ ॥ ଜାଣେ, ଯେମିତି ଜାଣେ, ମୁଁ ଅରୂପ ନୁହେଁ, ସଂଜୟ ।

ମନ ॥ ବନ୍ଦ କରନ୍ତୁ !

ବନ୍ଦନା ॥ ରହନ୍ତୁ, ମୋତେ ସବୁକଥା କହିବାକୁ ଦିଅନ୍ତୁ ।

ମନ ॥ ଇଏ ନାଟକର କଥା ନୁହେଁ । ଆପଣଙ୍କ ଘରୋଇ କଥା ।

ବନ୍ଦନା ॥ ନାଟକ ବି କାହା ଘରର କଥା ?

ମନ || ଆପଣ ସମସ୍ତେ ଭୁଲ୍ କହୁଚନ୍ତି । ଏମିତି କି ନିର୍ଦ୍ଦେଶକର ନିର୍ଦ୍ଦେଶ ବି ମାନୁନାହାନ୍ତି ।

ଧୀନ || କାରଣ, ନିର୍ଦ୍ଦେଶକର ଆବଶ୍ୟକତା ଆମର ନାହିଁ ।

ବନ୍ଦନା || ନାଟ୍ୟକାର ଆମ ନିଜ କଥା କହୁନାହାନ୍ତି । ତାଙ୍କ ସଂଳାପ ସବୁ ତାଙ୍କ ନିଜର । ମନ ଗଢ଼ା ।

ମନ || ଆପଣ କ'ଣ ତାଙ୍କ କଥା ଶୁଣିବେ ନାହିଁ ?

ସନ୍ତୁଷ୍ଟ || ନା, ଆମ ନିଜର ଅନେକ କଥା ଅଛି । ଆମେ କାହିଁକି ଅନ୍ୟର ତିଆରି କଥା କହିବାକୁ ଯିବୁ ?

ମନ || କାରଣ, ଆପଣମାନେ ସମସ୍ତେ ଅଭିନେତା ।

ସଂଜୟ || ନିର୍ଦ୍ଦେଶକ କହୁଚନ୍ତି—ଅଭିନୟ ଯେତେ ବାସ୍ତବ ହବ, ନାଟକ ସେତେ ସକ୍‌ସେସ୍‌ଫୁଲ୍ ହବ ।

ମନ || ସେ ବାସ୍ତବତା, ନାଟକର ସୀମା ଭିତରେ ।

ସୁରଞ୍ଜନ || ତା' ବୋଲି ଆମେ ଆମ କଥା ଠିକ୍ କହିବୁ ନାହିଁ ? ବନ୍ଦନା ! ମୁଁ ତୁମକୁ ବ୍ଲାକ-ମେଲ୍ କରୁଚି ? ତୁମର ରକ୍ତ ଶୋଷଣ କରୁଚି ?

କୁମୁଦ || ତମେ ମୋତେ ଅସଭ୍ୟ, କୁତ୍ସିତ କହୁଥିଲ ?

ବନ୍ଦନା || ତମେ ମୋ'ର ତଣ୍ଟି ଚିପିଦବ ବୋଲି କହୁଥିଲ ?

ତାରକ || ଆଜି ବରଂ ଥାଉ । କାଲିକି ରିହର୍ସାଲ୍ ହବ ।

ମନ || ବରଂ ଥାଉ । ସେଇ ଭଲ ।

ସୁରଭି || ଅଜି ଖାଲି ତା'ହେଲେ ନିଜ କଥା । ନାଟକ ହବା ପୂର୍ବରୁ ନିଜ ନିଜର ପରିସ୍ଥିତିଟା ପରିଷ୍କାର ହେଇଯିବା ଭଲ ।

ମନ || ନା, ସେସବୁ ଏଠି ନୁହେଁ । ଏଇଟା ରିହର୍ସାଲ-ରୁମ୍ । ବ୍ୟକ୍ତିଗତ ବୁଝାମଣା ଏଠି ନୁହେଁ, ଅନ୍ୟଠି ହବା ଭଲ ।

ଧୀନ || ଆପଣଙ୍କ ଡିରେକ୍‌ଟର୍ ଆସିଲେ, ତାଙ୍କୁ ସଫା ସଫା କହିଦେବେ—ଆମେ ସବୁ କଥା ଠିକ୍ ଭାବରେ କହିପାରିଲୁ, ସେମାନଙ୍କର ଆଉ ଦରକାର କ'ଣ ?

ସନ୍ତୁଷ୍ଟ || ନାଟ୍ୟକାରର ସଂଳାପ ବି ଆମେ କହିବୁଁ ନାହିଁ ।

ସୁରଞ୍ଜନ || ଆମେ ବି ଭଲ ପାଉଚୁଁ, ରାଜନୀତି କରୁଚୁଁ, ଭଲଏନା କରୁଚୁଁ । ଆମକୁ କ'ଣ କହିବାକୁ ହବ, ଆମେ ଜାଣୁ ।

(ଏଇ ସମୟରେ ବ୍ୟସ୍ତ ହୋଇ ପଶିଆସିଲେ ନିର୍ଦ୍ଦେଶକ)

ନିର୍ଦ୍ଦେଶକ ॥ ଇଏ କ'ଣ ହେଉଛି ? ଏତେ ଗୋଳମାଳ କାହିଁକି ?

ମନ ॥ ଆଜ୍ଞା ଆଜ୍ଞା, ସବୁ ଗୋଳମାଳ ହୋଇଯାଇଛି ।

ନିର୍ଦ୍ଦେଶକ ॥ ଏ ପର୍ଯ୍ୟନ୍ତ ରିହର୍ସାଲ୍ ହେଉଥିଲା ?

ମନ ॥ ନା ।

ନିର୍ଦ୍ଦେଶକ ॥ ନା ?

ବନ୍ଦନା ॥ କିଏ କହିଲା ? ଆମେ ତ ରିହର୍ସାଲ କରୁଥିଲୁ । ନା, କ'ଣ କହୁଚନ୍ତି, ସନ୍ତୋଷ ବାବୁ ?

ମନ ॥ ରିହର୍ସାଲ୍ କରୁଥିଲେ ? ନିଜ ମନକୁ ନିଜେ ସଂଳାପ କହୁଥିଲେ । ନିଜ ମନକୁ ମନ ପୋଜିସନ୍ ଆଉ ମୁଭ୍‌ମେଣ୍ଟ୍ସ କରୁଥିଲେ ।

ନିର୍ଦ୍ଦେଶକ ॥ ତା'ମାନେ ?

ସ୍ମାରକ ॥ ବହି ବାହାରର ଯେତେ ସବୁ କଥା ।

ମନ ॥ ଆଉ ମୁଭ୍‌ମେଣ୍ଟ୍ସ, ପୋଜିସନ୍ ସବୁ ନିଜ ଇଚ୍ଛାରେ, ଯୋଉଠି ପାରି ସେଇଠି—

ନିର୍ଦ୍ଦେଶକ ॥ (ଅନ୍ୟମାନଙ୍କୁ) କାହିଁକି ?

ସନ୍ତୋଷ ॥ ଆପଣ ଆମକୁ କହିଥିଲେ, ଚରିତ୍ର ସାଙ୍ଗରେ ଏକ୍ ହେବାକୁ ।

ନିର୍ଦ୍ଦେଶକ ॥ କହିଥିଲି ।

ସନ୍ତୋଷ ॥ ଯୋଉ ମୁହୂର୍ତ୍ତରେ ଏକ ହୋଇଗଲୁ, ସେଇ ମୁହୂର୍ତ୍ତରେ ଆଉ ନାଟକର ସଂଳାପ କି ଆପଣଙ୍କର ନିର୍ଦ୍ଦେଶ କିଛି ମନେ ରହିଲାନି । ମନକୁ ମନ ଆପଣାଛାଏଁ କଥାସବୁ ବାହାରିଗଲା ।

ନିର୍ଦ୍ଦେଶକ ॥ ବଡ଼ ଅନ୍ୟାୟ କଥା । ଆପଣମାନେ ନିର୍ଦ୍ଦେଶକଙ୍କର ନିର୍ଦ୍ଦେଶକୁ ମାନିବେ ନାହିଁ । ନାଟକର ସଂଳାପକୁ ଅପେକ୍ଷା ରଖିବେ ନାହିଁ । ପ୍ରମ୍ପଟରର ପ୍ରମ୍ପଟିଙ୍ଗ୍ ଶୁଣିବେ ନାହିଁ, ତା' ହେଲେ ନାଟକ ହେବ କେମିତି ?

ସୁରଭି ॥ ନାଟକ ଠିକ୍ ହେବ ।

ନିର୍ଦ୍ଦେଶକ ॥ କେମିତି ?

ସୁରଭି ॥ ଏଇ ତିନିଏ ଅଙ୍କରୁ ଯେମିତି ରିହର୍ସାଲ୍ ହେଉଥିଲା ।

ନିର୍ଦ୍ଦେଶକ ॥ ତା'ମାନେ, ଆପଣ କାହାକୁ ନ ମାନି, ନିଜ ଇଚ୍ଛାରେ—

କୁମୁଦ ॥ ଆପଣ କାହିଁକି ଆପଣଙ୍କ ଇଚ୍ଛାକୁ ଆମ ଉପରେ ଲଦି ଦେବେ ?

ନିର୍ଦ୍ଦେଶକ ॥ କାରଣ, ମୁଁ ହେଉଛି ନିର୍ଦ୍ଦେଶକ ।

କୁମୁଦ ।। ଇଏ କ'ଣ ଯଥେଷ୍ଟ ନୁହେଁ, ଆପଣଙ୍କୁ ଅସ୍ୱୀକାର କରିବା ପାଇଁ ?

ନିର୍ଦ୍ଦେଶକ ।। ମୁଁ ନିର୍ଦ୍ଦେଶକ । ଆପଣମାନଙ୍କଠାରୁ ମୋର ଅଭିଜ୍ଞତା ବହୁତ ବେଶି ।

ସନ୍ତୋଷ ।। ଆପଣ ଆମକୁ ବହୁତ କଷ୍ଟ ଦେଇଛନ୍ତି । ନିଜ ଇଚ୍ଛାରେ ଚାଲିବାର, ନିଜ ଖୁସିରେ ସଂଳାପ କହିବାର ଅଧିକାର ଛଡ଼ାଇ ନେଇଛନ୍ତି । ଆପଣ ଆମକୁ ସୀମିତ କରି ଦେଇଛନ୍ତି ।

ନିର୍ଦ୍ଦେଶକ ।। ସେଇଟା ନିର୍ଦ୍ଦେଶକର ଧର୍ମ । ପ୍ରକୃତ ଚରିତ୍ର ଚିତ୍ରଣ ପାଇଁ ଭୁଲ୍ ବାଟରୁ କାନମୋଡ଼ି ଆଣି ଠିକ୍ ବାଟରେ ଠିଆ କରେଇବା ହେଉଛି, ନିର୍ଦ୍ଦେଶକର କର୍ତ୍ତବ୍ୟ ।

ସୁରଭି ।। ଆପଣ ଆମକୁ ବାଧ୍ୟ କରିଚନ୍ତି, ବାହାର ସଂଳାପ କହିବା ପାଇଁ ।

କୁମୁଦ ।। ଆପଣ ଖାଲି ଲିମିଟେଡ୍ ଆଇଡେଣ୍ଟିଫିକେସନ୍ କଥା କହୁଚନ୍ତି । ରିଅଲ୍ ଆଇଡେଣ୍ଟିଫିକେସନ୍ ସହ୍ୟ କରିବାକୁ ଆପଣ ପ୍ରସ୍ତୁତ ନୁହଁନ୍ତି ।

ବନ୍ଦନା ।। ତେଣୁ, ଆପଣଙ୍କୁ ଆମେ ଅସ୍ୱୀକାର କରୁଛୁଁ ।

ସୁରଞ୍ଜନ ।। ଆପଣ ଜଣେ ପେଟି ବୁର୍ଜୁଆ ।

ବନ୍ଦନା ।। ଆପଣ ଏଷ୍ଟାବ୍ଲିସ୍‌ମେଣ୍ଟ୍ ।

ଦୀନ ।। ଆପଣ ଆଡ଼ମିନିଷ୍ଟ୍ରେଟର୍ ।

ସୁରଭି ।। ଆପଣ କ୍ରିଟିକ୍ ।

ସନ୍ତୋଷ ।। ତେଣୁ, ବୁଝି ପାରୁଛନ୍ତି ତ, ଆପଣଙ୍କୁ କାହିଁକି ଆମେ ଅସ୍ୱୀକାର କରୁଛୁଁ ?

ନିର୍ଦ୍ଦେଶକ ।। ଆପଣଙ୍କୁ ମୋ ନିର୍ଦ୍ଦେଶ ମାନିବାକୁ ପଡ଼ିବ, କାରଣ ମୁଁ ଯାହା ଦେଖେଁ, କେହି ଆପଣମାନେ ତାହା ଦେଖି ପାରନ୍ତି ନାହିଁ ।

(ସମସ୍ତେ ତାଙ୍କୁ ଘେରି ଯାଇ)

ସୁରଭି ।। ଆପଣ ଏଇ ମୁହୂର୍ତ୍ତରେ ଏଠୁ ଚାଲି ଯାଆନ୍ତୁ ।

ବନ୍ଦନା ।। ଆମେ ଆମ ନିଜ ଖୁସିରେ ରିହର୍ସାଲ୍ କରିବୁ ।

ସନ୍ତୋଷ ।। ଯା'ନ୍ତୁ, ବାହାରି ଯାଆନ୍ତୁ ।

ନିର୍ଦ୍ଦେଶକ ।। ମନମୋହନ ! ଏମାନେ କ'ଣ କହୁଚନ୍ତି ?

ମନ ॥ ମୁଁ କିଛି ବୁଝିପାରୁନି । ବୋଧହୁଏ, ଏମାନେ ଠିକ୍ କହୁଚନ୍ତି ।

ସନ୍ତ୍ରସ୍ତ ॥ ଯାଉଚନ୍ତି, ନା ନାହିଁ ।

ଦୀନ ॥ ନା, ନିଷ୍ଠୁର ହବାକୁ ବାଧ୍ୟ କରୁଚନ୍ତି ?

ମନ ॥ ବରଂ, ଆପଣ ଚାଲିଯା'ନ୍ତୁ ।

କୁମୁଦ ॥ ନ ହେଲେ, ଆପଣଙ୍କୁ ଜୋର୍ କରି ବାହାର କରିଦେବୁ । ଯା'ନ୍ତୁ । (ନିର୍ଦ୍ଦେଶକ ତଳେ ପଡ଼ିଗଲେ)

ମନ ॥ ଯା'ନ୍ତୁ, ଡେରି କରନ୍ତୁ ନାହିଁ ।

ବନ୍ଦନା ॥ (ସ୍ମାରକକୁ) ଯା'ନ୍ତୁ । ଫିଙ୍ଗି ଦିଅନ୍ତୁ ସେ ବହିଟାକୁ । ଆମ ସାଙ୍ଗରେ ଗୋଟାଏ ଚରିତ୍ର ହେଇଯା'ନ୍ତୁ ।

ସ୍ମାରକ ॥ ଆପଣ କ'ଣ ପୁଣି ରିହର୍ସାଲ୍ କରିବେ ?

ବନ୍ଦନା ॥ ତା ନ ହେଇଥିଲେ, ନିର୍ଦ୍ଦେଶକର ମୁହଁ ବନ୍ଦ କରିବାର କ'ଣ ଦରକାର ଥିଲା ?

ସ୍ମାରକ ॥ ବିନା ବହିରେ ? ବିନା ନିର୍ଦ୍ଦେଶକରେ ?

ସୁରଭି ॥ ବିନା ବହିରେ । ବିନା ନିର୍ଦ୍ଦେଶକରେ ।

ଦୀନ ॥ ଆସ, ଯେ କୌଣସି ଜାଗାରେ ଠିଆ ହେଇ ଆମେ କଥା କହିବା ।

ସୁରଭି ॥ ଆମ କଥା ?

ଦୀନ ॥ ହଁ, ଆମ କଥା । ଯାହା କହିବାକୁ ସୁଯୋଗ ମିଳୁ ନ ଥିଲା; ଅଥଚ ଯୋଉ କଥା କହିବା ନିହାତି ଦରକାର—
ଜାଣ, ମୁଁ ରେଜିଗ୍ନେସନ୍ ଫେରେଇ ଆଣିଲି ନାହିଁ ।

ସୁରଭି ॥ ଠିକ୍ କରିଚ ।

ଦୀନ ॥ ମୁଖ୍ୟମନ୍ତ୍ରୀ ·ବହୁତ ଅନୁନୟ ବିନୟ କଲେ । ତା'ପରେ ଧମକେଇଲେ; କିନ୍ତୁ ରେଜିଗ୍ନେସନ୍ ଲେଟର୍‌ଟା ତାଙ୍କ ମୁହଁ ଉପରକୁ ଫୋପାଡ଼ି ଦେଇ ମୁଁ ଗୁଡ଼ ଫୁଲେଇ ଚାଲି ଆସିଲି ।

ସୁରଭି ॥ ତମର ଏଇ ସାହସ ପାଇଁ ମୁଁ ସବୁବେଳେ ପସନ୍ଦ କରି-ଆସିଚି ।

ଦୀନ ॥ ମୁଖ୍ୟମନ୍ତ୍ରୀ ମୋତେ ଧମକ ଦେଇ କହିଲେ— ମୋ ପଲିଟିକାଲ୍ କ୍ୟାରିଅର ସେ ନଷ୍ଟ କରିଦେବେ ।

ସୁରଭି ॥ ତମେ କ'ଣ କରିବ ବୋଲି ଭାବିଚ ?

ଦୀନ ॥ ଆଉ ଥରେ ନିର୍ବାଚନ ଲଢ଼ି ମୁଁ ଦେଖେଇ ଦେବି ମୁଁ କେତେ ଲୋକପ୍ରିୟ ।

ସୁରଭି ॥ ତା'ପରେ ?

ଦୀନ ॥ ମୁଁ ପୁଣି ବିଧାନସଭାକୁ ଆସିବି । ମୁଖ୍ୟମନ୍ତ୍ରୀ ଲଜ୍ଜିତ ହେବେ ।

ସୁରଭି ॥ ତା'ପରେ କହିବେ, ତମେ ବୀରପୁରୁଷ । ତୁମକୁ ମନ୍ତ୍ରିତ୍ୱ ମିଳିବା ଉଚିତ ।

ଦୀନ ॥ ମନ୍ତ୍ରିତ୍ୱ ମିଳିବ । ମନ୍ତ୍ରିତ୍ୱ ମିଳିବ ।

ସୁରଭି ॥ ମୋର ଅପେକ୍ଷା ସୁଫଳ ହେବ ।

ଦୀନ ॥ ମନ୍ତ୍ରିତ୍ୱ ମିଳିବ ।

(ଦୁଇଜଣଙ୍କ ହଠାତ୍ ଉପଲବ୍ଧି କଲେ, ସେମାନେ ବନ୍ଧୁର ସଂଳାପକୁ ଫେରି ଯାଉଛନ୍ତି । ନିଷ୍ପଳ ଆକ୍ରୋଶର ପ୍ରତିଫଳନ)

ସ୍ମାରକ ॥ ଇଏ ତ ବନ୍ଧୁର ଦ୍ୱିତୀୟ ଅଙ୍କ, ପ୍ରଥମ ଦୃଶ୍ୟର ସଂଳାପ ।

ସନ୍ତ୍ରସ୍ତ ॥ (ବନ୍ଦନାକୁ) ସୁରଞ୍ଜନ ତୁମକୁ ବିରକ୍ତ କରୁଛି ।

ବନ୍ଦନା ॥ ମୁଁ ତା'ଠାରୁ ମୁକ୍ତି ପାଇବାର ବାଟ ଖୋଜୁଛି ।

ସନ୍ତ୍ରସ୍ତ ॥ ସେଇଥିପାଇଁ କହୁଛି—ତା'ର ଯେ କୌଣସି ଦୁର୍ବଳ ମୁହୂର୍ତ୍ତର ସୁଯୋଗ ନିଅ ।

ବନ୍ଦନା ॥ ସେ ମୋର ସର୍ବନାଶ କରିଛି । ଚାକିରି ପାଇଁ ମୁଁ ତା'ର କଣ କଲି ନ କଲି, ସବୁ ହିସାବ ସେ ରଖିଛି ।

ସଂଜୟ ॥ ସେ ତୁମକୁ ବଡ଼ କଷ୍ଟ ଦଉଛି ।

ବନ୍ଦନା ॥ ବଡ଼ ଯନ୍ତ୍ରଣା ।

ସଂଜୟ ॥ ତା'ଠାରୁ ତୁମର ମୁକ୍ତି ଦରକାର ।

ବନ୍ଦନା ॥ ଦରମା ପାଇବା ଦିନ ସେ ଗେଟ୍‌ପାଖରେ ଠିଆ ହୋଇ ଥିବ । ଦରମାର ଅଧାଟା ସେ ମୋ ହାତରୁ ନେଇଯିବ । ଅଧା ଦରମାରେ ସାରା ମାସଟା ଚଳିବା ଯେ କି କଷ୍ଟ ?

ସଂଜୟ ॥ ଶେଷ କରିଦେଲେ, ସବୁଦିନ ପାଇଁ ତୁମକୁ ଛୁଟି ମିଳିଯିବ ।

ବନ୍ଦନା ॥ ଶେଷ କରିଦେବି ! ନାଃ, ମୁଁ ବଡ଼ ଦୁର୍ବଳ । ମୁଁ ପାରିବି ନାହିଁ ।

ସଂଜୟ ॥ ତା'ହେଲେ ?

ବନ୍ଦନା ॥ ମୁଁ ଚାଲୁ, ଏ ଯନ୍ତ୍ରଣାରୁ ସବୁଦିନ ପାଇଁ ମୁକ୍ତି ପାଇବା ଲାଗି—

ସଞ୍ଜୟ ॥ କ'ଣ କରିବ ?

ବନ୍ଦନା ॥ ବିବାହ କରିବ । ମୁଁ ଜାଣେ, ଏମିତି ଗୋଟେ ପ୍ରସ୍ତାବରେ ସେ କେବେ ଅରାଜି ହବ ନାହିଁ ।

ସଞ୍ଜୟ ॥ ବନ୍ଦନା !

ବନ୍ଦନା ॥ ତା'ଛଡ଼ା, ଆଉ ଅନ୍ୟ ରାସ୍ତା ନାହିଁ ।

ସଞ୍ଜୟ ॥ ତା'ହେଲେ, ମୁଁ ?

ବନ୍ଦନା ॥ ହୁଏ ତ, ଅନେକ ଦିନ ପରେ ହଠାତ୍ ତମ ସାଙ୍ଗରେ ଦେଖା ହବ, ଅପ୍ରତ୍ୟାଶିତ ଭାବରେ । ତମେ ବି ଚମକିବ, ମୁଁ ବି ଚମକିବି ।

ସଞ୍ଜୟ ॥ ତମ କପାଳରେ ସିନ୍ଦୂର, ମୁଣ୍ଡରେ ଓଢ଼ଣା, ଆଖିରେ ଶୂନ୍ୟ-ଦୃଷ୍ଟି, ଉଦାସ ମୁହଁରେ ସକାଳ ସୂର୍ଯ୍ୟର ଆଲୁଅ । ମୁଁ ପଚାରିବି, ତମେ ସୁଖୀ ତ, ବନ୍ଦନା ?

ବନ୍ଦନା ॥ ମୁଁ କହିବି, ତମେ ତାକୁ ଚିହ୍ନ ?

ସଞ୍ଜୟ ॥ ସେ କିଏ ?

ବନ୍ଦନା ॥ ସେ ସୁରଞ୍ଜନ ।

ସଂଜୟ ॥ ତମର ସେ ପୁରୁଣା ଯନ୍ତ୍ରଣା ଆଉ ନାହିଁ ?

ବନ୍ଦନା ॥ ତମେ ମତେ ବଞ୍ଚାଅ, ଅରୂପ ! (ଧ୍ୱଚ୍ଧ ହୋଇଗଲେ)

ସ୍ମାରକ ॥ ପୁଣି ସେଇ ବନ୍ଧୁର ସଂଳାପ ଆସିଗଲା ।

ସୁରଞ୍ଜନ ॥ ସି ଇଜ୍ ଏ ଲଭ୍ଲାର୍ ।

କୁମୁଦ ॥ କାହିଁକି ?

ସୁରଞ୍ଜନ ॥ ମୋ ନାଁରେ ସ୍କାଣ୍ଡାଲ୍ କରୁଚି ।

କୁମୁଦ ॥ ଏଥିରେ କିଛି ସତ୍ୟତା ନାହିଁ ?

ସୁରଞ୍ଜନ ॥ ମୁଁ ତାକୁ ପାଇବାକୁ ଚାହୁଁଥିଲି ।

କୁମୁଦ ॥ ମୋର କିନ୍ତୁ, ଗୋଟାଏ ସୁନ୍ଦର ଇଚ୍ଛା ଅଛି ।

ସୁରଞ୍ଜନ ॥ କ'ଣ ?

କୁମୁଦ ॥ କାନ ଧରି ତାକୁ ପଚାରିବି—ମୁଁ ଅସଭ୍ୟ ? କୁତ୍ସିତ ?

ସୁରଞ୍ଜନ ॥ ତା'ପରେ ?

କୁମୁଦ ॥ ଫଟାସ୍ ଫଟାସ୍ ଦୁଇ ଗାଲରେ ଦୁଇଟା ଥାପଡ଼୍—

ସୁରଂଜନ ॥ ମୁଁ ଏବେ ବି ଆଶା ରଖିଚି ।

କୁମୁଦ ॥ ମୋର କନ୍ଥୁ, କୌଣସି ଆଶା ନାହିଁ । ପୁରଭ ଖୁସଣ ଚେଲସ ।

ସୁରଂଜନ ॥ ତା' ମାନେ, ଆମ ଛନଜଣଙ୍କୁ ନେଇ ବନ୍ଦନା ଗୋଟାଏ ସାଯାଥକ ଖେଳ ଖେଳୁଚ ।

କୁମୁଦ ॥ ସେଇ ଛବୋଟି ମାଙ୍କଡ ପଣ—

ସୁରଂଜନ ॥ Speak no evils (ମନ୍ଦ କୁହ ନାହିଁ)

କୁମୁଦ ॥ See no evils (ମନ୍ଦ ଦେଖ ନାହିଁ)

ସୁରଂଜନ ॥ And hear no evils ( ଏବଂ ମନ୍ଦ ଶୁଣ ନାହିଁ)

କୁମୁଦ ॥ କନ୍ଥୁ ଏ କଥା ସତ, ସୁଯୋଗ ପାଇଲ ମାତ୍ରେ, ଆମେ ତା'ର କଛ ନା କଛ କ୍ଷତି କରିବାକୁ ଉତ୍କଣ୍ଠିତ ।

ସୁରଂଜନ ॥ କାରଣ, ସେ ଆମ ପାଖରେ ପ୍ରହେଳିକା—

କୁମୁଦ ॥ କାରଣ, ସେ ସୁରୂପା, ଜଣେ ମନ୍ତ୍ରୀଙ୍କ ଭଉଣୀ ।

ସୁରଂଜନ ॥ କାରଣ, ସେ ଗ୍ଳକସ କରେ, ଅଉ ଆମ ସମସ୍ତଙ୍କୁ କଛ ନା କଛ, କେତେବେଳେ ନା କେତେବେଳେ, କୌଣସି ନା କୌଣସି ପ୍ରତଶ୍ରୁତି ଦେଇଚ । (ସ୍ତବ୍ଧ ହୋଇଗଲେ)

ସୂରକ ॥ ପୁଣି ସେଇ ବନ୍ଧ ଭିତରକୁ ଫେରିଗଲେ ।

ମନ ॥ ଅର୍ଥାତ୍, ଆମେ ପୁଣି ସେଇ ନାଟକ ପାଖକୁ ଫେରିଗଲେ ।

ସଂଜୟ ॥ ତା'ମାନେ ?

ମନ ॥ ଆପଣମାନେ ସମସ୍ତେ ଆପଣମାନଙ୍କର ନଜ କଥା କହୁଁ କହୁଁ ଏମିତ ଏକ ସ୍ଥାନରେ ପହଞ୍ଚିଲେ, ଯେ ହୁଉଚ, ଏ ନାଟକର ସଂଲାପ ।

ବନ୍ଦନା ॥ କ'ଣ ହେଲ, ସେଇଠୁ ?

ମନ ॥ ସେଇଠୁ ପ୍ରମାଣିତ ହେଇଗଲ, ନାଟ୍ୟକାର ବାଜି ଜତ-ଗଲେ । ଆପଣମାନେ ନାଟକର ସଂଲାପଠାରୁ ଦୂରକୁ ଯାଇ ପାରିଲେ ନାହିଁ ।

ଦୀନ ॥ (ସୂରଭକୁ) ସେ ଠିକ୍ କହୁଚନ୍ତି । ଆମେ ଘୂର ଘୂର ଆସି ନାଟକର ସଂଲାପ ପାଖରେ ପହଞ୍ଚିଲୁ ।

ମନ ॥ ଖାଲି ସେତକ ନୁହେଁ, ଏଠି ସେଠି ବୁଲ ଯୋଉ ଯୋଉ ପୋଜିସନ୍, ଫ୍ରେମ୍ ଅଉ ମୁଭ୍‌ମେଣ୍ଟ୍ ନେଲେ, ସେସବୁ ବହୁତ ଆଗରୁ ନର୍ଦ୍ଦେଶକଙ୍କଦ୍ୱାରା ନର୍ଦ୍ଦିଷ୍ଟ ।

ସୁରଂଜନ ॥ (ନଜ ସ୍ଥାନକୁ ଦେଖି) ସତେ ତ !

ସୁରଭି || ସେ ଠିକ୍ କହୁଚନ୍ତି ।

ମନ || ସେଇଠୁ ପ୍ରମାଣିତ ହୋଇଗଲା, ନିର୍ଦ୍ଦେଶକ ଠିକ୍ କହୁଥିଲେ ।

କୁମୁଦ || ଆଉ ଆମେ ?

ମନ || ଆପଣମାନେ ନିର୍ଦ୍ଦେଶକ ବା ନାଟ୍ୟକାରଙ୍କଠାରୁ ଦୂରକୁ ଯାଇ ପାରିଲେ ନାହିଁ ।

ବନ୍ଦନା || କିନ୍ତୁ, ନିଜ କଥା କହିବାକୁ ଯାଇ, ଆମେ ସବୁ ଚନ୍ଧା ପଡ଼ିଗଲେ ।

ସୁରଭି || ଏ ସମୁଦାୟଟା ତା' ହେଲେ କ'ଣ ହେଲା ?

ମନ || ଧରି ନିଅନ୍ତୁ ନା, ଇଏ ବି ଗୋଟାଏ ନାଟକ ।

ବନ୍ଦନା || ତା'ମାନେ, ତା'ମାନେ —

ମନ || ତା'ମାନେ, ଆପଣଙ୍କ ଅଜାଣତରେ ଅନ୍ୟମାନଙ୍କ ନିର୍ଦ୍ଦେଶରେ ପସନ୍ଦ ଅନୁଯାୟୀ ଅଭିନୟ କରୁଛନ୍ତି, ନାଟକ ବାହାରେ, ହୁଏ ତ ଜୀବନ ନାହିଁ । ଆମେ ସମସ୍ତେ ବିଭିନ୍ନ ସମୟରେ, ବିଭିନ୍ନ ମଞ୍ଚରେ, ବିଭିନ୍ନ ଭୂମିକାର ଅଭିନେତା ।— ଆଃ, ଇଏ ବି ସେଇ ବହିର କଥା ହୋଇଗଲା ।

ସୁରଭି || ତା'ହେଲେ ଆମ ଅଜାଣତରେ ଏଇଠି ଗୋଟାଏ ନାଟକ ଅଭିନୟ କରିଗଲୁଁ ?

ମନ || ଏବଂ ପ୍ରମାଣିତ କରିଦେଲେ, ଆପଣମାନେ ସମସ୍ତେ ଦ୍ୱୈତ-ଚରିତ୍ର । ନିଜ କଥା କହୁଁ କହୁଁ ନାଟକର ସଂଳାପ, ସଂଳାପ କହୁଁ କହୁଁ ନିଜ କଥା —

ବନ୍ଦନା || ତା' ହେଲେ, ଆମେ ହାରିଗଲୁଁ ?

ମନ || ଆପାତତଃ, ଏଇ ନାଟକରେ ।

(ବନ୍ଦନା ଧୀରେ ଧୀରେ ନିର୍ଦ୍ଦେଶକଙ୍କ ପାଖରେ ଠିଆ ହେଲା । ନିର୍ଦ୍ଦେଶକ ନିସ୍ତେଜ ହୋଇ ତଳେ ପଡ଼ିଥା'ନ୍ତି ।)

ବନ୍ଦନା || (ତାଙ୍କ ଉପରକୁ ନଇଁପଡ଼ି) ଆପଣ କାହିଁକି ଆଉ ପଡ଼ି-ରହିଲେ ? ଉଠନ୍ତୁ, ଏ ସମୁଦାୟଟା ଯଦି ଗୋଟାଏ ନାଟକ ହୁଏ, ତା'ହେଲେ ଆପଣ ତ ମରି ନାହାନ୍ତି ? ନାଟକର ଚରିତ୍ର ସିନା ମରେ, ପାତ୍ରପାତ୍ରୀ ତ ମରନ୍ତି ନାହିଁ ? ଉଠନ୍ତୁ, ଛଳନା ଆଉ ଭଲ ଲାଗୁନାହିଁ ।

ନିର୍ଦ୍ଦେଶକ ॥ (ଝାଡ଼ିଝୁଡ଼ି ହୋଇ ଉଠିଲେ) ଆପଣମାନେ ସମସ୍ତେ ପୁଣି ମୋତେ ଉଠେଇଲେ ?

ସଞ୍ଜୟ ॥ ଆପଣଙ୍କୁ ଛାଡ଼ି ଯେତେବେଳେ ଆଉ କିଛି କରାଯାଇ ପାରିବ ନାହିଁ, ନ ଉଠେଇ ଆଉ କ'ଣ କରିଥା'ନ୍ତୁ ? ଆଜିକାର ସମୁଦାୟ ଘଟଣା ଯଦି ନାଟକ ହୁଏ, ନାଟକ ଶେଷ ହୋଇଛି; ତେଣୁ ଆପଣଙ୍କ ଭୂମିକାର ବି ଶେଷ ହୋଇଛି ।

ନିର୍ଦ୍ଦେଶକ ॥ ଆଜିକାର ଏ ସମୁଦାୟ ଯଦି କୌଣସି ଏକ ନାଟକର ଅଭିନୟ ହୁଏ, ତେବେ ଏ ନାଟକର ନାଁ କ'ଣ ହୋଇପାରେ ?
(ସମସ୍ତେ ସମସ୍ତଙ୍କ ମୁହଁକୁ ଅନେଇଲେ । କେହି କାହାକୁ କିଛି ଉତ୍ତର ଦେଲେ ନାହିଁ । ଚା'ବାଲା ଆସିଲା)

ଚା'ବାଲା ॥ ମୁଁ ଫେର୍ ଆସିଛି । ପାର୍ଟି ଡାକ ଡାକ ତଣ୍ଟି ଅଠା ହୋଇଯିବଣି । ଜିଭ ଶୁଖି ଯିବଣି । ମୁଁ ଚା' ଆଣିଛି । ଗରମ ଚା' । (କେହି କିଛି ଉତ୍ତର ଦେଲେ ନାହିଁ) କେହି କିଛି କହୁ ନାହାନ୍ତି ଯେ । ମୁଁ ଚା' ଆଣିଛି, ବଢ଼ିଆ ଚା' । ସମସ୍ତେ କ'ଣ ଚୁପଚାପ ! ଆଜି କ'ଣ ତା'ହେଲେ ଏ ଘର ଭିତରେ ସତରେ ନାଟକ ହଉଥିଲା ? ରିହର୍ସାଲ୍ ହଉ ନ ଥିଲା ? (କେହି କିଛି କହିଲେ ନାହିଁ । ସମସ୍ତେ ଚିନ୍ତାରେ ମଗ୍ନ ଥିଲେ ।)

